# ମଗଜକ୍କ ପାଠମାଳା

ଅଷ୍ଟମ ପୁସ୍ତକ



ଓଡ଼ିଶା ପବ୍ଲିଶିଂ ହାଉସ୍

ନୂତନ ସିଲବସ ଅନୁଯାୟୀ ରଚିତ

# ନାଗରିକ ପାଠମାଳା

( ଅଷ୍ଟମ ପୁସ୍ତକ )

ଅଷ୍ଟମ ଶ୍ରେଣୀ ନିମନ୍ତେ

ଲେଖକ:—

**ଡକ୍ଟର ମାୟାଧର ମାନସିଂହ** ଏମ୍. ଏ. ପି. ଏଚ୍. ଡି.

ଏଡିସନାଲ୍ ସୋସିଆଲ ଏଡୁକେସନ୍ ଅଫିସର,

କଟକ

ନୂତନ ପରିମାର୍ଜିତ ସଂସ୍କରଣ

୧୯୫୭

ପ୍ରକାଶକ:—

**ଓଡ଼ିଶା ପବ୍ଲିଶିଂ ହାଉସ୍**

ବ୍ରହ୍ମପୁର : କଟକ : ସମ୍ବଲପୁର : ଜୟପୁର

ମୂଲ୍ୟ ୪ । ।

# ସୂଚିପତ୍ର

# ରାଜା ରାମମୋହନ ରାୟ

ରାଜା ରାମମୋହନ ରାୟ ଆଧୁନିକ ଭାରତର ଜନକ ବୋଲି ସର୍ବମତରେ ସମ୍ମାନିତ । କାରଣ ଶିକ୍ଷା, ଧର୍ମ, ସମାଜ, ରାଜନୀତି ପ୍ରଭୃତି ଜାତୀୟ ଜୀବନର ସକଳ ଦିଗରେ ସେ ଯେଉଁ ବୀଜ ବପନ କରି ଯାଇଥିଲେ, ତାହା ସମୃଦ୍ଧ ହୋଇ ବର୍ତ୍ତମାନ ଭାରତକୁ ଛାୟା, ଶୋଭା ଓ ଫଳ ଦାନ କରୁଅଛି । ଭଗୀରଥ ଯେପରି ଗଙ୍ଗାଙ୍କୁ ଆଣି ସମଗ୍ର ଉତ୍ତର ଭାରତକୁ ପବିତ୍ର ଓ ଉର୍ବର କରି ଯାଇଅଛନ୍ତି, ରାମମୋହନ ସେହିପରି ନବଯୁଗର ପ୍ରବର୍ତ୍ତନ କରି ଅନ୍ଧକାରାଚ୍ଛନ୍ନ ଭାରତକୁ ଅରୁଣାଲୋକ ଦେଇଯାଇ ଅଛନ୍ତି ।

ପଲାସୀ ଯୁଦ୍ଧର ୧୭ ବର୍ଷ ପରେ ରାମମୋହନଙ୍କ ଜନ୍ମ ଏବଂ ସିପାହୀ ବିଦ୍ରୋହର ୨୪ ବର୍ଷ ପୂର୍ବରୁ ତାଙ୍କର ମୃତ୍ୟୁ ହୋଇଅଛି । ତାଙ୍କର ସମଗ୍ର ଜୀବନକାଳ ଏପରି ସମୟରେ କଟିଛି, ଯେତେବେଳେ କି ଇଂରେଜଶାସନ ଏ ଦେଶର ମାଟିରେ ଚେର ଦେବାକୁ ଆରମ୍ଭ ମାତ୍ର କରୁଥିଲା । ଭାରତର ସେ କାଳର ଚିତ୍ର ଅତି ଦୁଃଖକର ଓ ଭୟାନକ । ଠଗମାନଙ୍କ ଅତ୍ୟାଚାର, ନରବଳି, ସତୀଦାହ, ଗଙ୍ଗାସାଗରରେ ସନ୍ତାନ ବିସର୍ଜନ ପ୍ରଭୃତି ଲୋମହର୍ଷଣ କ୍ରିୟାରେ ସମଗ୍ର ଦେଶ ପୂରି ରହିଥିଲା; ଦେଶ ଅଜ୍ଞାନାନ୍ଧକାରରେ ବୁଡ଼ି ରହିଥିଲା । କେତେ ଇଂରେଜ ଓ ଦେଶୀୟ ଖ୍ରୀଷ୍ଟିୟାନମାନଙ୍କୁ ଲୋକେ ଲେଖୁଛନ୍ତି ବୋଲି ...ଣୋ

କରୁଥିଲେ ଏବଂ ଜାତି ଯିବା ଭୟରେ କେହି ଇଂରେଜୀ ଭାଷା ଶିଖୁ ନ ଥିଲେ କିମ୍ବା ଜାହାଜରେ ଚଢ଼ି ସମୁଦ୍ରଯାତ୍ରା ମଧ୍ୟ କରୁ ନ ଥିଲେ । ଏହିପରି ପ୍ରତିକୂଳ କାଳରେ ଜନ୍ମଗ୍ରହଣ କରି ରାମମୋହନ ଯାହା କରି ଯାଇଛନ୍ତି, ତାହା ବାସ୍ତବିକ ବିସ୍ମୟକର । ସେ ସଂସ୍କୃତ, ଆରବୀ ଓ ଫାର୍ସି ଭାଷାରେ ପାଣ୍ଡିତ୍ୟ ଲାଭ କରିଥିଲେ; ତା ଛଡ଼ା ନିଜ ଚେଷ୍ଟାରେ ଇଂରାଜୀ, ଗ୍ରୀକ୍, ହିବ୍ରୁ, ଫରାସୀ ପ୍ରଭୃତି ଭାଷାରେ ମଧ୍ୟ ଗଭୀର ବ୍ୟୁତ୍ପତ୍ତି ଲାଭ କରିଥିଲେ । ସେ ଭାରତରେ କାଳୋପଯୋଗୀ ବ୍ରାହ୍ମଧର୍ମର ପ୍ରତିଷ୍ଠା କରିଥିଲେ, ଦେଶରୁ ସତୀଦାହ ପ୍ରଥା ନିବାରଣ ଓ ଇଂରେଜୀ ଶିକ୍ଷା ପ୍ରଚଳନ କରାଇଥିଲେ ଏବଂ ସମୁଦ୍ର ପଥରେ ବିଲାତ ଯାଇ ସେଠାରେ ଭାରତୀୟମାନଙ୍କର ରାଜନୈତିକ ଓ ସାମାଜିକ ଅଧିକାର ଲାଗି ପାର୍ଲିଆମେଣ୍ଟ ଆଗରେ ଲଢ଼ିଥିଲେ । ରାମମୋହନଙ୍କ ପରି ଦୂରଦୃଷ୍ଟି-ସମ୍ପନ୍ନ ପ୍ରତିଭାବାନ୍ ଯୁଗପ୍ରବର୍ତ୍ତକ ପୃଥିବୀର ଇତିହାସରେ ବିରଳ ।

ରାଜା ରାମମୋହନ ରାୟ

ହୁଗ୍ଳି ଜିଲ୍ଲା ରାଧାନଗର ଗ୍ରାମରେ ୧୭୭୪ ଖ୍ରୀଷ୍ଟାବ୍ଦରେ ରାମମୋହନ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ

ରମାକାନ୍ତ ରାୟ । ରାମମୋହନ ଯେଉଁ ବର୍ଷ ଜନ୍ମ ହେଲେ, ସେହି ବର୍ଷ ହିଁ ଓ୍ୱାରେନ୍ ହେଷ୍ଟିଂସ୍ ଭାରତର ସକଳ ଇଂରେଜାଧିକୃତ-ଭୂମିର ଗଭର୍ଣ୍ଣର ଜେନେରାଲ ହେଲେ ଏବଂ କଲିକତାରେ ସୁପ୍ରୀମକୋର୍ଟ ସ୍ଥାପିତ ହେଲା । ଏହା ଫଳରେ ଭାରତରେ ମୁସଲମାନ ଶାସନର ଅବସାନ ଓ ଇଂରେଜୀ ଶାସନ ପ୍ରକୃତ ଆରମ୍ଭ ହେଲା । ସେହି ଆରମ୍ଭର ଶଙ୍ଖଧ୍ୱନି ସ୍ୱରୂପ ବିଧାତା ଯେପରି କି ରାମମୋହନ ରାୟଙ୍କୁ ପ୍ରେରଣ କଲେ ।

ରାମମୋହନଙ୍କ ପରିବାରର ବୈଷୟିକ ଅବସ୍ଥା ବେଶ୍ ସ୍ୱଚ୍ଛଳ ଥିଲା । ବଙ୍ଗଳାର ମୁସଲମାନ ନବାବଙ୍କ ଅଧୀନରେ ଚାକିରୀ କରି ତାଙ୍କର କେହି ପୂର୍ବ ପୁରୁଷ ସମ୍ମାନଜନକ 'ରାୟ' ଉପାଧି ପ୍ରାପ୍ତ ହୋଇଥିଲେ ଏବଂ ସେହି ସୂତ୍ରରେ ରାୟ ପରିବାର ଅନେକ ଭୂସମ୍ପତ୍ତି ଭୋଗ କରି ଆସୁଥିଲେ ।

ମୁସଲମାନୀ ଅମଳରେ ଭଦ୍ରସନ୍ତାନମାନେ ଫାର୍ସି ଭାଷା ଶିକ୍ଷା କରୁଥିଲେ । ଗ୍ରାମ୍ୟ ପାଠଶାଳାରେ ହିଁ ବାଳକ ରାମମୋହନଙ୍କର ଅସାଧାରଣ ସ୍ମୃତିଶକ୍ତି ଓ ମେଧା ଦେଖିପାରି ପିତା ରମାକାନ୍ତ ପୁତ୍ରକୁ ଫାର୍ସିଭାଷା ଶିକ୍ଷା କରିବା ପାଇଁ ପାଟଣାକୁ ପଠାଇଦେଲେ । ସେତେବେଳକୁ ରାମମୋହନଙ୍କ ବୟସ ମୋଟେ ଆଠବର୍ଷ ।

ପାଟଣାରେ ଦୁଇ ତିନି ବର୍ଷ ଆରବୀ ଓ ଫାର୍ସିଭାଷା ଶିକ୍ଷା କରି ରାମମୋହନଙ୍କ ଜୀବନରେ ଭାବାନ୍ତର ଜାତ ହେଲା । ଆରବୀ ଭାଷାରେ କୋରାଣ ଓ ଫାର୍ସିଭାଷାରେ ହାଫେଜ୍, ରୁମି ପ୍ରଭୃତି ପାରସିକ କବିମାନଙ୍କର କାବ୍ୟ ପାଠ କରି ସେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ଈଶ୍ୱର ଏକ ଓ ଅରୂପ ଏବଂ ପ୍ରତିମାପୂଜା

ଘୋର କୁସଂସ୍କାର । ଏଥିରେ ପ୍ରଚଳିତ ହିନ୍ଦୁଧର୍ମର ବିରୁଦ୍ଧଭାବ ଥିବାରୁ ତାଙ୍କର ହିନ୍ଦୁଧର୍ମ ପ୍ରତି ଶ୍ରଦ୍ଧା କମିବାକୁ ଆରମ୍ଭ କଲା ।

ପାଠଶାଳାରେ ଫାର୍ସି ଓ ଆରବୀ ଶିକ୍ଷା ଶେଷ ହେଲା ପରେ, ହିନ୍ଦୁଧର୍ମର ତତ୍ତ୍ୱଜ୍ଞାନ ପାଇବା ଲାଗି ଦ୍ୱାଦଶବର୍ଷୀୟ ରାମମୋହନଙ୍କୁ ତାଙ୍କ ପିତା ସଂସ୍କୃତଶାସ୍ତ୍ର ଅଧ୍ୟୟନ ପାଇଁ କାଶୀଧାମକୁ ପଠାଇ-ଦେଲେ । ଅଳ୍ପକାଳ ମଧ୍ୟରେ ରାମମୋହନ ବେଦ, ଉପନିଷଦ ପ୍ରଭୃତି ହିନ୍ଦୁ ଧର୍ମଗ୍ରନ୍ଥମାନ ଶେଷ କରିପକାଇଲେ । ସେସବୁ ଗ୍ରନ୍ଥରେ ମଧ୍ୟ ସେ 'ଏକମେବାଦ୍ୱିତୀୟଂ' ରୂପେ ଈଶ୍ୱର କଳ୍ପିତ ହୋଇଥିବାରୁ ଏବଂ ସେ ସବୁରେ ପୌତ୍ତଳିକତାର ଚିହ୍ନ ନ ଥିବାର ଦେଖିପାରି ପ୍ରଚଳିତ ହିନ୍ଦୁଧର୍ମ ପ୍ରତି ତାଙ୍କର ବିଦ୍ରୋହଭାବ କ୍ରମେ ବଦ୍ଧମୂଳ ହେଲା ।

ଷୋହଳ ବର୍ଷ ବୟସରେ ରାମମୋହନ ଅଧ୍ୟୟନ ଶେଷକରି ଘରକୁ ଫେରିଲେ । କଥାବାର୍ତ୍ତାରୁ ତରୁଣ ପୁତ୍ରର ଧର୍ମଦ୍ରୋହୀ ଭାବ ବୁଝିପାରି ପିତା କ୍ରମେ ଆଶଙ୍କିତ ଓ ଆତଙ୍କିତ ହେଲେ । ଦିନେ ପିତା ରାମମୋହନଙ୍କ ପ୍ରକୋଷ୍ଠରୁ ଖଣ୍ଡିଏ ଲେଖା ହେଉଥିବା ଅପୂର୍ଣ୍ଣ ପାଣ୍ଡୁଲିପି ଆଣି ଦେଖିଲେ ଯେ, ତାଙ୍କର ପୁତ୍ରରତ୍ନ ଏଥିରେ ହିନ୍ଦୁଧର୍ମର ପୌତ୍ତଳିକତା ବିରୁଦ୍ଧରେ ଲେଖିବାକୁ ଯାଉଛନ୍ତି । ରକ୍ଷଣଶୀଳ ପିତା ଏପରି ଧର୍ମଦ୍ରୋହୀ ପୁତ୍ରକୁ ଘରେ ରଖିବା ଉଚିତ ମନେ କଲେ ନାହିଁ । ତର୍କ, ବିତର୍କ, ଭୟ ଓ ଶାସନ—କାହିଁରେ ପୁତ୍ରକୁ ତାହାର ସ୍ଥିର ସିଦ୍ଧାନ୍ତରୁ ଟଳାଇବା ଅସମ୍ଭବ ଜାଣି ପିତା ଷୋହଳ ବର୍ଷର ତରୁଣ ପୁତ୍ରକୁ ଘରୁ ବାହାର କରିଦେଲେ । ଏତେ ତରୁଣ ବୟସରେ ସତ୍ୟ ପ୍ରତି ଏପରି ଦୃଢ଼ାନୁରାଗ ଓ ନିଜମତ ରକ୍ଷା ପାଇଁ ଏପରି ଦୁଃଖ ସହିବା ଇତିହାସରେ ବିରଳ ।

ଘରୁ ବହିଷ୍କୃତ ହୋଇ ନିଃସମ୍ବଳ ରାମମୋହନ ଅସୀମ ସାହସ ଧରି ନାନା ଦେଶ ଭ୍ରମଣ କରିବାକୁ ଲାଗିଲେ । ଯେଉଁ ସ୍ଥାନକୁ ଯାଆନ୍ତି, ସେଠାକାର ଭାଷା ଶିଖନ୍ତି ଏବଂ ସେଠାର ପଣ୍ଡିତମାନଙ୍କ ସହିତ ତର୍କ କରନ୍ତି । ଏହାପରେ ସେ ତିବ୍ବତ ପର୍ଯ୍ୟନ୍ତ ଯାତ୍ରା କରିଥିଲେ ।

ସେଠାରେ ସେ ଦେଖିଲେ ଯେ ବୁଦ୍ଧଦେବ ପ୍ରବର୍ତ୍ତିତ ଧର୍ମ ଓ ତିବ୍ବତୀୟ ବୌଦ୍ଧଧର୍ମ ମଧ୍ୟରେ ବହୁତ ପ୍ରଭେଦ । ତେଣୁ ସେ ତିବ୍ବତୀୟ ଲାମାମାନଙ୍କ ସଙ୍ଗେ ତର୍କ କରିବାକୁ ଲାଗିଲେ । ରାମମୋହନଙ୍କ ତର୍କବାଣ ଅସହ୍ୟ ହେବାରୁ ଲାମାମାନେ ଉପାୟାନ୍ତର ନ ଦେଖି ତାଙ୍କୁ ହତ୍ୟା କରିବାକୁ ବସିଥିଲେ । କିନ୍ତୁ କେତେକ ତିବ୍ବତୀୟ ରମଣୀଙ୍କ ସହାୟତାରେ ସେ ତିବ୍ବତରୁ ପ୍ରାଣ ଘେନି ପଳାଇ ଆସିଥିଲେ । ଏହି ଘଟଣାରୁ ରାମମୋହନଙ୍କ ପ୍ରାଣରେ ନାରୀଜାତି ପ୍ରତି ଯେଉଁ ଗଭୀର ସମ୍ମାନ ଜାତ ହୋଇଥିଲା, ତାହା ଜୀବନବ୍ୟାପୀ ରହିଥିଲା ଏବଂ ସେ ତାଙ୍କର ବହୁବିଧ କର୍ମ ମଧ୍ୟରେ ନାରୀଜାତିର ଉନ୍ନତି ଲାଗି ମଧ୍ୟ ଚେଷ୍ଟା କରିଥିଲେ ।

ତିବ୍ବତରୁ ଫେରିଲା ପରେ ରାମମୋହନ ଏକ ପିତୃପ୍ରେରିତ ଦୂତକୁ ଭେଟି ଘରକୁ ଫେରିଲେ । ସେତେବେଳକୁ ତାଙ୍କର ବୟସ କୋଡ଼ିଏ । ପିତା ଭାବିଥିଲେ ଯେ, ଘରୁ ତଡ଼ାଖାଇ ଓ ଭ୍ରାମ୍ୟମାଣ ଜୀବନରେ ବହୁ ଦୁଃଖ ଭୋଗ କଲାପରେ ପୁତ୍ରର ପୂର୍ବ ଭାବର ବହୁତ ପରିବର୍ତ୍ତନ ହୋଇଥିବ । କିନ୍ତୁ କିଛିଦିନ ପରେ ଦେଖାଗଲା,ରାମମୋହନଙ୍କର କୌଣସି ପରିବର୍ତ୍ତନ ହୋଇନାହିଁ । ପିତା ଘୋର ବିରକ୍ତିରେ ପୁତ୍ରକୁ ପୁନର୍ବାର ଘରୁ ବାହାର କରି

ଦେଲେ । କିନ୍ତୁ ଏଥିରେ ରାମମୋହନ ପିତାଙ୍କଠାରୁ କିଛି କିଛି ଅର୍ଥ ସାହାଯ୍ୟ ପାଇବାର ଆଶା ରଖିଲେ ।

ଏହି ସମୟରେ ରଙ୍ଗପୁର ଜିଲାର କଲେକ୍ଟର ଡିଗ୍‌ବି ସାହେବଙ୍କ ଅଧୀନରେ ଗୋଟିଏ କିରାଣୀର ସ୍ଥାନ ଶୂନ୍ୟ ହେଲା । ସେ କାଳରେ ଏପରି ଗୋଟିଏ ପଦର ମୂଲ୍ୟ ଓ ମର୍ଯ୍ୟାଦା ବର୍ତ୍ତମାନ ଅପେକ୍ଷା ଢେର ବେଶି ଥିଲା । ଏପରି ପଦ ପାଇଁ ଉପଯୁକ୍ତ ଲୋକ ବି ମିଳୁ ନ ଥିଲେ । ରୋଜଗାରର ପନ୍ଥାରୂପେ ରାମମୋହନ ଏହି ପଦ ଲାଗି ପ୍ରାର୍ଥୀ ହେଲେ । ସେତେବେଳେ ରାମମୋହନ ସାମାନ୍ୟ ଭାବରେ ଇଂରେଜୀ କହି ପାରୁଥିଲେ; ମାତ୍ର ଆଦୌ ଲେଖିପାରୁ ନ ଥିଲେ । ଡିଗ୍‌ବି ସାହେବ ସ୍ୱାଧୀନଚେତା, ବହୁଭାଷାବିତ୍ ରାମମୋହନଙ୍କୁ ଆଗରୁ ଜାଣିଥିଲେ ଏବଂ ତାଙ୍କୁ ଯୋଗ୍ୟ ଲୋକ ଭାବି ନିଯୁକ୍ତି ଦାନ କଲେ । କିନ୍ତୁ ରାମମୋହନ ସାହେବଙ୍କୁ ଲେଖିଲେ ଯେ, ସାହେବ ଯଦି ନିମ୍ନ-ମର୍ମରେ ଏକ ଅଙ୍ଗୀକାରପତ୍ର ସ୍ୱାକ୍ଷର କରିବେ, ତେବେ ଯାଇଁ ସେ କର୍ମ ଗ୍ରହଣ କରିବେ—“ସେ ଯେତେବେଳେ ସାହେବଙ୍କ ନିକଟକୁ ଆସିବେ, ସେତେବେଳେ ସାହେବ ତାଙ୍କୁ ବସିବାକୁ ଆସନ ଦେବେ ଏବଂ ଅନ୍ୟ ଅମଲାଙ୍କ ପରି ତାଙ୍କ ପ୍ରତି ଯେପରି ହାକିମି ନ ଦେଖାନ୍ତି ।” ଗୁଣଗ୍ରାହୀ ଡିଗ୍‌ବି ସାହେବ ଏପରି ଏକ ଅଙ୍ଗୀକାରପତ୍ର ଲେଖି ଦେଇଥିଲେ । କର୍ମରେ ଯୋଗ ଦେଲା ପରେ ଡିଗ୍‌ବି ରାମମୋହନଙ୍କ ବିଦ୍ୟାବୁଦ୍ଧି ଓ କର୍ମଦକ୍ଷତାର ପରିଚୟ ପାଇ କ୍ରମେ ତାଙ୍କୁ ପରମ ବନ୍ଧୁରୂପେ ଗ୍ରହଣ କଲେ ଏବଂ ଉଭୟେ ଉଭୟଙ୍କୁ ଇଂରାଜୀ ଓ ଦେଶୀୟ ସାହିତ୍ୟର ଆଲୋଚନାରେ ସାହାଯ୍ୟ କରିବାକୁ ଲାଗିଲେ ।

ରାମମୋହନ ୧୮୦୦ରୁ ୧୮୧୪ ସାଲ ପର୍ଯ୍ୟନ୍ତ ସରକାରୀ ଚାକରୀ କରିଥିଲେ । ସେ ଦଉତାବେଳେ କରେଣ୍ଟରିରୁ କିନ କିନ ଜିଲାର ଦେୱାନ୍‌ପଦକୁ ଉନ୍ନୀତ ହୋଇ ଯାଉଥିଲେ । ଇତିମଧ୍ୟରେ ସେ ବିବାହ କରିଥିଲେ ଏବଂ ବହୁ ଜମିବାଡ଼ିର ବ୍ୟବସ୍ଥା କରି ଯାଇଥିଲେ । କିନ୍ତୁ ସେ କେବେହେଲେ ତାଙ୍କ ଜୀବନର ପ୍ରଧାନ କର୍ମ ଭୁଲିଯାଇ ନ ଥିଲେ । ଅବସର ସମୟରେ ନାନା ପଣ୍ଡିତଙ୍କ ସଙ୍ଗେ ଶାସ୍ତ୍ରାଲାପ କରିବାରେ ଏବଂ ଆରବୀ, ଫାର୍ସି ଓ ଇଂରାଜୀରେ ଏକେଶ୍ୱରବାଦ ବିଷୟରେ ଗ୍ରନ୍ଥ ରଚନା ଓ ପ୍ରକାଶ କରିବାରେ ସେ ନିଜକୁ ବିଶେଷ୍ୟତ ପାଇଁ ପ୍ରସ୍ତୁତ କରି ରଖୁଥିଲେ ।

ଶେଷରେ ଚାକରୀରୁ ଅବସର ଗ୍ରହଣ କରି ରାମମୋହନ କଲିକତା ନଗରୀରେ ବସବାସ କଲେ ଏବଂ ସ୍ୱଜାତିର ଉନ୍ନତି ଲାଗି ନିଜର ଧନ, ମନ, ସମୟ ଓ ଶକ୍ତି ଉତ୍ସର୍ଗ କରିବାର ବାସନା ତାଙ୍କର ବର୍ତ୍ତମାନ ଚରିତାର୍ଥ ହେବାକୁ ବସିଲା । ପ୍ରଥମେ ସେ ହିନ୍ଦୁମାନଙ୍କର ପୌତ୍ତଳିକତା ବିରୁଦ୍ଧରେ ଘୋର ସଂଗ୍ରାମ ଚଳାଇବାକୁ ଆରମ୍ଭ କଲେ । ବ୍ୟକ୍ତିଗତ ତର୍କ, ସଭାରେ ବକ୍ତୃତା, ପୁସ୍ତିକା ପ୍ରଚାର ପ୍ରଭୃତି ନାନା ଉପାୟରେ ସେ ହିନ୍ଦୁଧର୍ମର କୁସଂସ୍କାର ବିରୁଦ୍ଧରେ ଲଢ଼ିବାକୁ ଲାଗିଲେ । କଲିକତା ଓ ବଙ୍ଗ ଦେଶରେ ହୁଲସ୍ଥୁଲ ପଡ଼ିଗଲା ଏବଂ ଘରେଘରେ ଲୋକେ ଏହି ସମାଜବିପ୍ଳବୀଙ୍କର କଥା ଆଲୋଚନା କରିବାକୁ ଲାଗିଲେ । ସମଗ୍ର ଦେଶରେ ତାଙ୍କର ନିନ୍ଦା ରଟିତ ହେଲା ଏବଂ ତାଙ୍କର ଶତ୍ରୁସଂଖ୍ୟା ବଢ଼ିବାକୁ ଲାଗିଲା । କିନ୍ତୁ ଅଟଳମନା ରାମମୋହନ ମୁଷ୍ଟିମେୟ ଶିଷ୍ୟ ବନ୍ଧୁଙ୍କୁ ନେଇ ସ୍ୱନିର୍ବାଚିତ ପଥରେ

ଗୃହ୍ଲବାକୁ ଲାଗିଲେ । ପ୍ରଥମେ ପ୍ରଥମେ ସେ ନିଜ ଗୃହରେ ଆତ୍ମୀୟ-ସଭା ନାମକ ଏକ ସଭା ପ୍ରତି ସପ୍ତାହରେ ଅନୁଷ୍ଠିତ କରି ଏକେଶ୍ୱରବାଦ ପ୍ରଚାର କରିବାକୁ ଲାଗିଲେ । ଶିଷ୍ୟମାନଙ୍କ ସଂଖ୍ୟା ବଢ଼ିବାରୁ କ୍ରମେ ତାହା ସ୍ୱତନ୍ତ୍ର ଗୃହରେ ଅନୁଷ୍ଠିତ ହେଲା । ପରେ ଏହି ସଭାକୁ 'ବ୍ରାହ୍ମସମାଜ' ନାମ ଦେଇ ସେ ସୁପ୍ରସିଦ୍ଧ ବ୍ରାହ୍ମଧର୍ମର ବୀଜ ବପନ କରିଥିଲେ । ଶିକ୍ଷିତ ହିନ୍ଦୁ ସମାଜରେ ଯାହା କିଛି ସଂସ୍କାର ହୋଇଅଛି, ସେଥିଲାଗି ବ୍ରାହ୍ମସମାଜ ଗୌଣତଃ ଦାୟୀ । ବିଶେଷତଃ ହିନ୍ଦୁ ସମାଜରେ ଆଧୁନିକ ନାରୀ ସ୍ୱାଧୀନତା ଓ ନାରୀଶିକ୍ଷା ପ୍ରବର୍ତ୍ତନ ଓ ପ୍ରସାର ବ୍ରାହ୍ମଧର୍ମ ପ୍ରଭାବର ଫଳ । ଏହି କଲ୍ୟାଣକର ପରିବର୍ତ୍ତନ ସବୁର ମୂଳ ରାମମୋହନ ।

ରାମମୋହନ ଯେ କେବଳ ପ୍ରଚଳିତ ହିନ୍ଦୁଧର୍ମର କୁସଂସ୍କାର ବିରୁଦ୍ଧରେ ଯୁଦ୍ଧ କରୁଥିଲେ ତାହା ନୁହେଁ ; ସେ ଯେଉଁଠି ଅସତ୍ୟ ଓ କୁସଂସ୍କାର ଦେଖୁଥିଲେ, ତାହା ବିରୁଦ୍ଧରେ ଯାଉଥିଲେ । ଖ୍ରୀଷ୍ଟଧର୍ମରେ ମଧ୍ୟ କୁସଂସ୍କାର ଥିବାର ଦେଖାଇ ସେ ଖ୍ରୀଷ୍ଟିୟାନ ପାଦ୍ରୀସମାଜର ବିରକ୍ତିଭାଜନ ହୋଇଥିଲେ । କିନ୍ତୁ ରାମମୋହନ ସାଧାରଣ ନିନ୍ଦୁକ ନ ଥିଲେ । ତାଙ୍କର ସତ୍ୟ ପ୍ରତି ଏପରି ଅନୁରାଗ ଥିଲା ଯେ, ଖ୍ରୀଷ୍ଟ ଧର୍ମଗ୍ରନ୍ଥ ବାଇବେଲ୍‌ର ପ୍ରକୃତ ଧର୍ମମତ ଜାଣିବା ପାଇଁ ସେ ଇଂରାଜୀ ବାଇବେଲ୍ ତ ପଢ଼ିଥିଲେ, ତା ଛଡ଼ା ହିବ୍ରୁ ଓ ଗ୍ରୀକ୍ ଭାଷାରେ ଲିଖିତ ମୂଳ ବାଇବେଲ୍ ପଢ଼ିବା ପାଇଁ ହିବ୍ରୁ ଓ ଗ୍ରୀକ୍ ଭାଷା ମଧ୍ୟ ଶିକ୍ଷା କରିଥିଲେ । ସତ୍ୟ ପାଇଁ ଏ ପ୍ରକାର ଅଧ୍ୟବସାୟ କେତେ ଜଣଙ୍କଠାରେ ସମ୍ଭବ ?

ଏହି ସମୟରେ ସତୀଦାହ ପ୍ରଥାର ନିବାରଣ ନେଇ ଦେଶରେ ବିଶେଷ ଆନ୍ଦୋଳନ ଚାଲିଥାଏ । ହିନ୍ଦୁମାନଙ୍କ ଧର୍ମରେ ହସ୍ତକ୍ଷେପ କରାଯିବା ଭୟରେ ଇଂରେଜ ସରକାର ପ୍ରତିଷେଧକ ଆଇନ ଜାରି କରୁ ନ ଥାନ୍ତି । କିନ୍ତୁ ସତୀଦାହପ୍ରଥା ଯେ ହିନ୍ଦୁ ଶାସ୍ତ୍ର-ବିରୁଦ୍ଧ ଓ ହିନ୍ଦୁଧର୍ମର ଏକ କଳଙ୍କ, ଏହା ପ୍ରମାଣ କରି ରାମ-ମୋହନ ଇଂରାଜୀ ଓ ଅନ୍ୟାନ୍ୟ ଭାଷାରେ ବହୁ ପୁସ୍ତିକା ପ୍ରକାଶ କରିବାକୁ ଲାଗିଲେ । ଲର୍ଡ଼ ଉଇଲିୟମ୍ ବେଣ୍ଟିକ୍ ଭାରତର ବଡ଼ଲାଟ ହୋଇ ଆସିବା ପରେ ରାମମୋହନ ରାୟଙ୍କୁ ଡକାଇ ଏ ବିଷୟରେ କଥାବାର୍ତ୍ତା କରିଥିଲେ । ବେଣ୍ଟିକ୍ ରାମମୋହନଙ୍କ ପୁସ୍ତିକାଦି ବିଲାତରେ ପାଠ କରି ଆସିଥିଲେ । କାରଣ ସେତେବେଳକୁ ଏକ ସ୍ୱାଧୀନଚେତା ଉଚ୍ଚ ଆଦର୍ଶବାଦୀ ସମାଜସଂସ୍କାରକ ଭାବରେ ରାମମୋହନଙ୍କ ନାମ କେବଳ ଭାରତରେ ନୁହେଁ, ବିଲାତ ଓ ଆମେରିକାରେ ମଧ୍ୟ ଖ୍ୟାତି ଲାଭ କରିଥିଲା । ତାଙ୍କର ଇଂରାଜୀ-ଭାଷା-ଲିଖିତ ଭିନ୍ନ ଭିନ୍ନ ପୁସ୍ତିକାଦି ବିଲାତ ଓ ଆମେରିକାରେ ଗୁଣୀ ସମାଜଦ୍ୱାରା ଆଗ୍ରହ ସହକାରେ ପଠିତ ହେଉଥିଲା । ବେଣ୍ଟିକ୍ ଭାରତକୁ ଆସିବା ପୂର୍ବରୁ ରାମମୋହନଙ୍କ ଗୁଣଗ୍ରାମରେ ମୁଗ୍ଧ ହୋଇ ଆସିଥିଲେ । ବର୍ତ୍ତମାନ ସତୀଦାହ ପ୍ରସଙ୍ଗରେ ତାଙ୍କ ସଙ୍ଗେ କଥାଭାଷା ଓ ନାନାପରାମର୍ଶ ହେଲା ପରେ ବେଣ୍ଟିକ୍ ଏହି କୁପ୍ରଥାକୁ ଭାରତରୁ ବିଦୂରିତ କରିଦେଲେ । ବେଣ୍ଟିକ୍‌ଙ୍କୁ ଏଥିଲାଗି ଧନ୍ୟବାଦ ଦେବାପାଇଁ ରାମମୋହନ କଲିକତାରେ ଏକ ସଭା ଆହ୍ୱାନ କରିଥିଲେ । ଘୃଣା ଓ ଭୟରେ ସେ ସଭାକୁ ଅଧିକାଂଶ ଗଣ୍ୟମାନ୍ୟ ହିନ୍ଦୁ ଭଦ୍ରଲୋକ ଯାଇ ନ ଥିଲେ ।

ବାଇଶ ବର୍ଷ ପର୍ଯ୍ୟନ୍ତ ରାମମୋହନ ଇଂରାଜୀ ଭାଷା ଜାଣି ନ ଥିଲେ । ପରେ ଡିଗ୍‌ବି ଓ ଅନ୍ୟାନ୍ୟ ଇଂରେଜ କର୍ମଚାରୀମାନଙ୍କ

ସମ୍ପୂର୍ଣରୂପେ ଅଧିକ ଇଂରାଜୀ ଭାଷାରେ ଲେଖିବା ଓ କହିବାରେ ସେ ଅସାଧାରଣ ବ୍ୟୁତ୍ପତ୍ତି ଲାଭ କରି ପାରିଥିଲେ । କ୍ରମେ ତାଙ୍କର ଦୃଢ଼ ଧାରଣା ହେଲା ଯେ, ଇଂରାଜୀ ଭାଷା ନ ଶିଖିଲେ ଭାରତ-ବାସୀମାନଙ୍କର କୁସଂସ୍କାର ଓ ଅଜ୍ଞାନାନ୍ଧକାରରୁ ମୁକ୍ତି ପାଇବାର ଅନ୍ୟ ଉପାୟ ନାହିଁ । ତେଣୁ ସେ ସରକାରଙ୍କୁ ଅପେକ୍ଷା ନ କରି ହେକେତୋଟି ସାହେବ ବନ୍ଧୁଙ୍କ ସହଯୋଗିତାରେ ପ୍ରଥମେ ନିଜ ଗୃହରେ ଓ ପରେ ଅନ୍ୟତ୍ର ନିଜ ବ୍ୟୟରେ ଗୋଟିଏ ଇଂରାଜୀ ସ୍କୁଲ ସ୍ଥାପନ କଲେ । ଏହାହିଁ ହେଲା ଭାରତର ପ୍ରଥମ ଇଂରାଜୀ ସ୍କୁଲ । ଏହି ସମୟରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତରେ ଶିକ୍ଷା-ବିସ୍ତାର ପାଇଁ ଏକଲକ୍ଷ ଟଙ୍କା ମଞ୍ଜୁର କରିଥାନ୍ତି । ଦେଶରେ ଆଲୋଚନା ଚାଲିଥାଏ—ସଂସ୍କୃତ, ଆରବୀ ପ୍ରଭୃତି ପ୍ରାଚ୍ୟ ଭାଷାରେ ନା ପାଶ୍ଚାତ୍ୟ ଇଂରାଜୀ ଭାଷାରେ ଏହି ଶିକ୍ଷା ଦିଆଯିବ ? ରାମ-ମୋହନ ଦୃଢ଼ଭାବରେ ପ୍ରଚାର କରିବାକୁ ଲାଗିଲେ ଯେ, ସଂସ୍କୃତ ପ୍ରଭୃତି ଭାଷାରେ ଶିକ୍ଷା ଦିଆଗଲେ ଭାରତବର୍ଷ ଶତ ଶତ ବର୍ଷ ଧରି ଅଜ୍ଞାନାନ୍ଧକାରରେ ବୁଡ଼ି ରହିଥିବ ଏବଂ କେବଳ ଇଂରାଜୀ ଭାଷାହିଁ ଭାରତକୁ ନୂତନ ଆଲୋକ ଦାନ କରିପାରିବ । ଏଠାରେ ମନେ ରଖିବାକୁ ହେବ ଯେ, ରାମମୋହନ ସଂସ୍କୃତ, ଆରବୀ ଓ ଫାର୍ସି ଭାଷାମାନଙ୍କରେ ଅସାଧାରଣ ପଣ୍ଡିତ ଥିଲେ । କଥିତ ଅଛି, ସମଗ୍ର ଋକ୍‌ବେଦ ତାଙ୍କର ମୁଖସ୍ଥ ଥିଲା । କିନ୍ତୁ ତା ସତ୍ତ୍ୱେ ପ୍ରଖର ଦୂରଦୃଷ୍ଟି ଯୋଗୁଁ ସେ ଦେଶବାସୀଙ୍କୁ ଇଂରାଜୀ ଶିକ୍ଷା ଦେବାପାଇଁ ସଂଗ୍ରାମ ଚଳାଇଥିଲେ । ମୂଳତଃ ତାଙ୍କର ପ୍ରଚାର ଫଳରେହିଁ ଭାରତ-ବର୍ଷରେ ଇଂରାଜୀ ଶିକ୍ଷାର ପ୍ରସାର ହେଲା ।

ସେ ସମୟରେ ହିନ୍ଦୁମାନେ ସମୁଦ୍ରଯାତ୍ରା କରିବାକୁ ଭୟ ଓ ଘୃଣା କରୁଥିଲେ । ରାମମୋହନ ଏହି କୁସଂସ୍କାର ଭାଙ୍ଗିବା ପାଇଁ

ଏବଂ ୟୁରୋପ ଦେଖି ଆସିବା ପାଇଁ ବିଲାତ ଯିବାକୁ ମନସ୍ଥ କରିଥିଲେ । ୧୮୩୩-୩୪ ରେ ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କ ସନନ୍ଦର ପରିବର୍ତ୍ତନ କାଳ ଉପସ୍ଥିତ ହେଲା । ଏଥିପାଇଁ ପାର୍ଲିଆମେଣ୍ଟ ଏକ କମିଟି ସ୍ଥାପନ କରିଥିଲେ । ରାମମୋହନ ଏହି କମିଟି ଆଗରେ ଭାରତୀୟମାନଙ୍କର ରାଜନୈତିକ ଓ ସାମାଜିକ ଦାବୀ ସମ୍ବନ୍ଧରେ ସାକ୍ଷ୍ୟ ଦେବାଲାଗି ସ୍ଥିର କଲେ । ଏହି ସମୟରେ ଦିଲ୍ଲୀର ମୋଗଲ ବାଦଶାହ ତାଙ୍କର କେତେକ ଅଭିଯୋଗ କମ୍ପାନୀ ଆଗରେ ଉପସ୍ଥାପିତ କରିବାକୁ ଯାଉଥିଲେ । ରାମମୋହନ ରାୟ ବିଲାତଯାତ୍ରା କରୁଥିବାର ଜାଣିପାରି ବାଦଶାହ ତାଙ୍କୁ ନିଜର ପ୍ରତିନିଧି ନିର୍ବାଚିତ କଲେ ଏବଂ ତାଙ୍କର ସମୁଦ୍ରଯାତ୍ରାର ସକଳ ବ୍ୟୟଭାର ନିଜେ ଗ୍ରହଣ କରି ତାଙ୍କୁ 'ରାଜା' ଉପାଧିରେ ସମ୍ମାନିତ କଲେ ।

ସେତେବେଳେ ଭାରତବର୍ଷରୁ ବିଲାତ ଯିବାକୁ ସମୁଦ୍ରଯାତ୍ରା ପ୍ରାୟ ପାଞ୍ଚ ମାସ କାଳ ଲାଗୁଥିଲା । ସୁଏଜ୍ କେନାଲ ଖୋଲାହୋଇ ନ ଥାଏ । ତେଣୁ ସେ କାଳର ପାଲଟଣା ଜାହାଜ ସବୁ ଉତ୍ତମାଶା ଅନ୍ତରୀପ ଦେଇ ଯାଉଥିଲା । ରାମମୋହନ ନିଜ ସାଥିରେ ନିଜର ପୋଷ୍ୟପୁତ୍ର, ପୂଜାରୀ, ଭୃତ୍ୟ ଓ ଗୋଟିଏ ଦୁଗ୍ଧବତୀ ଧେନୁ ନେଇ ୧୮୩୦ ଖ୍ରୀଷ୍ଟାବ୍ଦର ନଭେମ୍ବର ୧୫ ତାରିଖରେ ଯାତ୍ରା ଆରମ୍ଭ କରିଥିଲେ ଏବଂ ୧୮୩୧ ଖ୍ରୀଷ୍ଟାବ୍ଦର ଏପ୍ରିଲ ୮ ତାରିଖରେ ବିଲାତର ଲିଭରପୁଲ୍ ବନ୍ଦରରେ ପହଞ୍ଚିଥିଲେ ।

ବିଲାତରେ ସେ ଯେପରି ସବୁଶ୍ରେଣୀର ଲୋକଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ, ତାହା ମହାତ୍ମା ଗାନ୍ଧୀ ଓ ରବୀନ୍ଦ୍ରନାଥ ଠାକୁରଙ୍କ ଛଡ଼ା ଅନ୍ୟ କାହା ଭାଗ୍ୟରେ ଘଟିନାହିଁ । ଫରାସୀ ସମ୍ରାଟ ତାଙ୍କ ସଙ୍ଗେ ଏକତ୍ର ଭୋଜନ କରିଥିଲେ । ବିଲାତର

ଗୁଣୀ ଓ ପଣ୍ଡିତ ଲୋକମାନେ ତାଙ୍କର ଅଗାଧ ପାଣ୍ଡିତ୍ୟ, ଉଚ୍ଚ ଆଦର୍ଶ ଓ ଅସାଧାରଣ ବାକ୍‌ଶକ୍ତି ଦର୍ଶନ କରି ମୁଗ୍ଧ ହୋଇ ଯାଇଥିଲେ ।

କିନ୍ତୁ କିଏ ଜାଣିଥିଲା, ରାମମୋହନ ୟୁରୋପର ବରଣମାଳା ଧରି ଆଉ ଘରକୁ ଫେରିବେ ନାହିଁ ? ବ୍ରିଷ୍ଟଲ୍ ନଗରରେ ଅବସ୍ଥାନ ସମୟରେ ହଠାତ୍ ରାମମୋହନଙ୍କୁ ଜ୍ୱର ହେଲା ଏବଂ ଅଳ୍ପଦିନ ରୋଗ ଭୋଗ ପରେ ସେହିଠାରେ ତାଙ୍କର ମୃତ୍ୟୁ ଘଟିଥିଲା । ତାଙ୍କ ମୃତ୍ୟୁରେ ଇଂଲଣ୍ଡ, ଆମେରିକା ଓ ଭାରତବର୍ଷ ସର୍ବତ୍ର ଦୁଃଖର ଛାୟା ଘୋଟି ଯାଇଥିଲା ।

## ପ୍ରଶ୍ନ

୧ । ଠଗ, ହିନ୍ଦୁ, ସତୀଦାହ, ଗଙ୍ଗାସାଗର, ହିବ୍ରୁ—ଏଗୁଡ଼ିକର ପରିଚୟ ଦିଅ ।

୨ । "ରାମମୋହନ ଆଧୁନିକ ଭାରତର ଜନକ"—ଏହି ଉକ୍ତିର ସାର୍ଥକତା ପ୍ରତିପାଦନ କର ।

୩ । ରାମମୋହନ ପିତାଙ୍କ ଆଦେଶ ପାଳି ନ ଥିଲେ । ଏହା ତାଙ୍କ ପକ୍ଷେ କିପରି ଗୌରବଜନକ ହେଲା ?

---

## ଇଂଲଣ୍ଡର ସମୃଦ୍ଧିକୁ ନିରକ୍ଷର ନାପିତର ଦାନ

ଇଂରେଜମାନେ ବଣିକ ଜାତି । ସେମାନେ ବାଣିଜ୍ୟ ବ୍ୟପଦେଶରେ ଭାରତବର୍ଷକୁ ଆସିଥିଲେ ଏବଂ ସେହି

ବାଣିଜ୍ୟରେ ଏପରି କୃତକାର୍ଯ୍ୟ ହୋଇଥିଲେ ଯେ, ସେଥିରୁ ପ୍ରଚୁର ଲାଭ ପାଇବା ସଙ୍ଗେ ସଙ୍ଗେ ଭାରତବର୍ଷ ପରି ଏକ ବିଶାଳ ରାଜ୍ୟ ମଧ୍ୟ ଅଧିକାର କରି ବସିଲେ । ଅଷ୍ଟାଦଶ ଶତାବ୍ଦୀରେ ଶ୍ରମଲାଘବକାରୀ ଓ ବହୁ-ପ୍ରସୂ ଅନେକ ଯନ୍ତ୍ରପାତିର ଉଦ୍ଭାବନ ଇଂଲଣ୍ଡର ବାଣିଜ୍ୟକୁ ବହୁ ପରିମାଣରେ ସାହାଯ୍ୟ କରିଥିଲା । ସେତେବେଳେ ପୃଥିବୀର ଅନ୍ୟ କୌଣସି ଦେଶରେ ଏପ୍ରକାର ଯନ୍ତ୍ରାଦି ଉଦ୍ଭାବିତ ହୋଇ ନ ଥିବାରୁ କଳପ୍ରସୂତ ଦ୍ରବ୍ୟମାନଙ୍କରେ ସମଗ୍ର ପୃଥିବୀରେ ଇଂଲଣ୍ଡର ଏକାଧିପତ୍ୟ ବାଣିଜ୍ୟ ବହୁ କାଳ ଯାଏଁ ନିର୍ଦ୍ଦ୍ୱନ୍ଦ୍ୱରେ ଚାଲିଥିଲା । ନୂତନ କଳମାନଙ୍କ ଭିତରେ ସୂତା ଓ ବସ୍ତ୍ରର କଳ ଇଂଲଣ୍ଡର ଧନାଗମ ପାଇଁ ପ୍ରଧାନ ଉପାୟ ଥିଲା କହିଲେ ଚଳେ । ବିସ୍ମୟର କଥା ଏହି ଯେ, ବସ୍ତ୍ର-କଳର ଉଦ୍ଭାବକ ଜଣେ ନିରକ୍ଷର ଦରିଦ୍ର ଇଂରେଜ ନାପିତ । ଏହି ନାପିତ ପରେ ସମ୍ମାନାବହ 'ସର୍' ଉପାଧିରେ ଭୂଷିତ ହୋଇଥିଲେ ଏବଂ ମୃତ୍ୟୁ ବେଳକୁ କୋଟି କୋଟି ଟଙ୍କାର ସଂପଦ ଛାଡ଼ି ଯାଇଥିଲେ । ଅଧ୍ୟବସାୟ ଓ ଆତ୍ମଚେଷ୍ଟା ବଳରେ ମନୁଷ୍ୟ କିପରି ହୀନହୀନତାରୁ ଉପରକୁ ଉଠି ସମାଜର ଶୀର୍ଷତମ ସ୍ଥାନ ଅଧିକାର କରିପାରେ, ନାପିତ-ପ୍ରବର ସର୍ ରିଚାର୍ଡ଼ ଆର୍କରାଇଟ୍ଙ୍କର ଜୀବନ ତାହାର ଏକ ଜାଜ୍ଜ୍ୱଲ୍ୟମାନ ଦୃଷ୍ଟାନ୍ତ ।

ରିଚାର୍ଡ଼ ଆର୍କରାଇଟ୍ ଦରିଦ୍ରଗୃହରେ ଇଂଲଣ୍ଡର ପ୍ରେଷ୍ଟନ୍ ନଗରରେ ୧୭୩୨ ଖ୍ରୀ: ରେ ଜନ୍ମଗ୍ରହଣ କରିଥିଲେ । ତେରଟି ଭାଇଭଉଣୀଙ୍କ ଭିତରେ ସେ ଥିଲେ କନିଷ୍ଠ । ତାଙ୍କୁ କୌଣସି ପ୍ରକାର ଶିକ୍ଷା ଦେବା ପିତାଙ୍କ ପକ୍ଷରେ ସମ୍ଭବ ହୋଇ ନ ଥିଲା । ପର ଜୀବନରେ ସେ ବହୁ କଷ୍ଟରେ ସାମାନ୍ୟ ଲେଖି ପାରୁଥିଲେ ।

ତାଙ୍କର ଯାହା କିଛି ଶିକ୍ଷା, ଯାହା କିଛି ସାଧନା, ସମସ୍ତ ଆତ୍ମଚେଷ୍ଟା ଓ ଆତ୍ମପ୍ରେରଣାର ଫଳ ।

ବିଦ୍ୟାଳୟକୁ ପଠାଇ ନ ପାରି ଋକ୍‌ର୍ଡ଼ଙ୍କ ପିତା ତାଙ୍କୁ ଅତି ଅଳ୍ପ ବୟସରେ ସେହି ନଗରର ଗୋଟିଏ ନାପିତର ସାହାଯ୍ୟକାରୀ ଭାବରେ ନିଯୁକ୍ତ କଲେ । ଏହି ବ୍ୟବସ୍ଥା ଦ୍ୱାରା ସେ କିଛି ଅର୍ଜନ କରି ବୃଦ୍ଧ ପରିବାର ପୋଷଣରେ କିଞ୍ଚିତ୍ ସହାୟତା କରିବାକୁ ସମର୍ଥ ହୋଇଥିଲେ । ଚତୁର ଋକ୍‌ର୍ଡ଼ ଶୀଘ୍ର ନାପିତ କର୍ମ ଶିଖିନେଇ ଅଳ୍ପକାଳ ଭିତରେ ନିଜେ ସ୍ୱାଧୀନ ଭାବରେ ନାପିତ ବୃତ୍ତି ଆରମ୍ଭ କରିଦେଲେ । ଅର୍ଥାଭାବରୁ ସହରର କୌଣସି ସଦର ଜାଗାରେ କ୍ଷୌରଶାଳା ବସାଇ ନ ପାରି ସେ ଏକ ଗଳିର ଶସ୍ତା ଭଡ଼ାରେ ଭୂତଳସ୍ଥ ଏକ କୋଠରି ନେଲେ ଏବଂ ଉପରେ ଲେଖି ଦେଲେ ଯେ, "ଭୂ-ନିମ୍ନସ୍ଥ ନାପିତ ନିକଟକୁ ଆସନ୍ତୁ; ସେ ଆପଣଙ୍କୁ ସାମାନ୍ୟ ଏକ ପେନୀରେ ଭଦ୍ର କରିବେ ।" ସାଧାରଣ କ୍ଷୌର-ମୂଲ୍ୟଠାରୁ ଋକ୍‌ର୍ଡ଼ଙ୍କ କ୍ଷୌର ମୂଲ୍ୟ କମ୍ ଥିବାରୁ ବହୁଲୋକ ତାଙ୍କ ନିକଟକୁ ଆସିଲେ ଏବଂ ସହରର ଅନ୍ୟ ନାପିତମାନେ ବାଧ୍ୟ ହୋଇ ସେମାନଙ୍କର ଦର ଏକ ପେନୀକୁ କମାଇ ଦେଲେ । ଏହା ଦେଖି ଚତୁର ଋକ୍‌ର୍ଡ଼ ତାଙ୍କ ଦର ଅଧ ପେନୀ କରିଦେଲେ । ସେ କାଳରେ ଇଂଲଣ୍ଡରେ ପୁରୁଷ ଲୋକେ ପରଚୂଳା ବ୍ୟବହାର କରୁଥିଲେ । ନାରୀମାନଙ୍କର କେଶ ଏହି ପରଚୂଳା ତିଆରିରେ ବ୍ୟବହୃତ ହେଉଥିଲା । ଋକ୍‌ର୍ଡ଼ କିଛିକାଳ ନାପିତ ଭାବରେ ସାମାନ୍ୟ ଅର୍ଥ ଜମେଇବା ପରେ ଏହି ପରଚୂଳା ବ୍ୟବସାୟରେ ଅଧିକ ଲାଭ ହେବ ଭାବି ପ୍ରେଷ୍ଟନ ନଗରରେ ନାପିତବୃତ୍ତି ଛାଡ଼ି ଏକ ଭ୍ରାମ୍ୟମାଣ କେଶ-ବ୍ୟବସାୟୀ ହେଲେ । ନାପିତ ଥିଲାବେଳେ ସେ କେଶକୁ ରଞ୍ଜିତ କରିବା ପାଇଁ ଏକ ନୂତନ

ରଙ୍ଗ ଆବିଷ୍କାର କରିଥିଲେ । କେଶ-ବ୍ୟବସାୟ ସଙ୍ଗେ ଏହି ରଙ୍ଗ ବ୍ୟବସାୟ କରି ମଧ୍ୟ ସେ ବେଶ୍ ଅର୍ଥ ଉପାର୍ଜ୍ଜନ କରିବାକୁ ଲାଗିଲେ ।

ଏହି ଭ୍ରାମ୍ୟମାଣ ବ୍ୟବସାୟ ତାଙ୍କ ଭାବୀ-ଜୀବନର ଖ୍ୟାତି ଓ ସମ୍ପତ୍ତିର ମୂଳଭିତ୍ତି ହୋଇଥିଲା । ସେ ଇଂଲଣ୍ଡର ଲାଙ୍କାସାୟାର ଜିଲ୍ଲାରେ ବ୍ୟବସାୟ ଉଦ୍ଦେଶ୍ୟରେ ବୁଲୁଥିଲେ । ସେଠାରେ ସୂତାକଟା ଓ ବସ୍ତ୍ରବୟନ ବହୁ ପ୍ରାଚୀନକାଳରୁ ଏକ ସ୍ଥାନୀୟ ବୃତ୍ତି ଥିଲା । ଭାରତବର୍ଷ ପରି ସେକାଳରେ ଇଂଲଣ୍ଡରେ ସୂତା ଓ ବସ୍ତ୍ର ହାତେ ହାତେ ତିଆରି ହେଉଥିଲା ଏବଂ ଏହି ବସ୍ତ୍ରଶିଳ୍ପ ଲକ୍ଷ ଲକ୍ଷ ତନ୍ତୁବାୟଙ୍କର ଏକମାତ୍ର ଜୀବନୋପାୟ ଥିଲା । କି ଉପାୟରେ ବହୁତ ବସ୍ତ୍ର ଅଳ୍ପ ସମୟରେ ତିଆରି ହୋଇପାରିବ, ତାହା ଇଂଲଣ୍ଡରେ ଅନେକ ଲୋକଙ୍କର ତତ୍କାଳୀନ ଚିନ୍ତା ଥିଲା । ଇଂଲଣ୍ଡୀୟ ବସ୍ତ୍ରର ଚାହିଦା ଚାରିଆଡ଼େ ବଢ଼ୁଥିଲା ।

ହସ୍ତଚାଳିତ ତନ୍ତର ଗତି ମନୁଷ୍ୟ ହସ୍ତ ଉପରେ ନିର୍ଭର କରେ । ମନୁଷ୍ୟ ହସ୍ତ ଚଳେଇଲେ ସେ ଚାଲିବ, ନ ହେଲେ ପଡ଼ି ରହିବ । ଅନ୍ୟ ସମସ୍ତ ହସ୍ତଚାଳିତ ଶିଳ୍ପ ସମ୍ବନ୍ଧରେ ବି ସେହି କଥା । ଆର୍କ୍ରାଇଟ୍ ତନ୍ତୁବାୟମାନଙ୍କର ତନ୍ତ ଦେଖି ଭାବିଲେ, ଏପରି ଗୋଟିଏ କଳ କ'ଣ ଉଦ୍ଭାବନ କରି ହେବ ନାହିଁ, ଯାହାର ଗତି ନିଜଠାରୁ ବାହାରିବ ଓ ଯାହା ମନୁଷ୍ୟ ହସ୍ତର ବିନା ସାହାଯ୍ୟରେ ବରାବର ଚାଲିଥିବ ! ଆର୍କ୍ରାଇଟ୍ ନିଜେ କଳକବ୍ଜା ତିଆରି କରିବା ଜାଣି ନ ଥିଲେ । ତାଙ୍କ ମୁଣ୍ଡରେ କେବଳ ନାନା ପ୍ରକାର କଳ୍ପନା ଚାଲିଥାଏ । ସେ ୱାରିଙ୍ଗ୍‌ଟନ୍ ନଗରର 'କେ' ନାମକ ଜଣେ ଘଣ୍ଟା-ନିର୍ମାତାଙ୍କୁ ସାଙ୍ଗ କରି ତାଙ୍କ ହାତରେ ନିଜର କଳ୍ପନାଗୁଡ଼ିକୁ ମୂର୍ତ୍ତିଦାନ କରିବାକୁ ଲାଗିଲେ ।

ରିଗ୍ରଭ୍ର୍ଡ଼ ଏଇ କଳକବ୍ଜା କରିବାରେ ଏପରି ମାତିଗଲେ ଯେ, ଶେଷରେ ତାଙ୍କର ଲାଭଜନକ ବ୍ୟବସାୟଟି ମାଟି ହୋଇଗଲା । ଇତିମଧ୍ୟରେ ସେ ବିବାହ କରି ସାରିଥିଲେ । ରିଗ୍ରଭ୍ର୍ଡ଼ଙ୍କର ପତ୍ନୀ ପତିଙ୍କର ଏହି ନୂତନ ଉଦ୍ଭାବନର କଳ୍ପନା ଓ ଯୋଜନା ବୁଝିବାକୁ ଏକାନ୍ତ ଅକ୍ଷମ ଥିଲେ । ସେ ଦେଖିଲେ ଯେ, ରିଗ୍ରଭ୍ର୍ଡ଼ ଏଥିରୁ ଗୁଡ଼ାଏ କଳକବ୍ଜା କରି ବୃଥା ଅର୍ଥ ନଷ୍ଟ କରୁଛନ୍ତି ଓ ବ୍ୟବସାୟ ମାଟି କରି ପରିବାରକୁ କଷ୍ଟ ଦେଉଛନ୍ତି । ସେ ଦିନେ ରାଗରେ ରିଗ୍ରଭ୍ର୍ଡ଼ଙ୍କର ନବନିର୍ମିତ ଆଦର୍ଶକୁ ଭାଙ୍ଗିଦେଲେ । ଦୃଢ଼ପ୍ରତିଜ୍ଞ ରିଗ୍ରଭ୍ର୍ଡ଼ ନିଜର ଉଦ୍ଭାବନକୁ ନ ଛାଡ଼ି ସେହିଦିନଠାରୁ ସ୍ତ୍ରୀକୁ ପରିତ୍ୟାଗ କରି ଅନ୍ୟ ସ୍ଥାନକୁ ଚାଲିଗଲେ ।

ଶେଷରେ କେ'ଙ୍କ ସାହାଯ୍ୟରେ ରିଗ୍ରଭ୍ର୍ଡ଼ ନୂତନ ଲୁଗା-କଳର ଆଉ ଗୋଟିଏ ଆଦର୍ଶ ତିଆରି କଲେ । ତାହା ଅନେକ ବ୍ୟବସାୟୀଙ୍କ ମନକୁ ପାଇଲା । ସେହି ଆଦର୍ଶ ଅନୁସାରେ କଟିଂହାମ୍ ସହରରେ ପ୍ରଥମେ ଏକ ଲୁଗାକଳ ସ୍ଥାପିତ ହେଲା । ତାହା ପ୍ରଥମେ ଘୋଡ଼ାମାନଙ୍କ ଦ୍ୱାରା ଚାଳିତ ହେଉଥିଲା । କିନ୍ତୁ ପରେ ଜଳଶକ୍ତି ସାହାଯ୍ୟରେ ଏବଂ ଶେଷରେ ବାଷ୍ପଦ୍ୱାରା ପରିଚାଳିତ ହୋଇ ବସ୍ତ୍ରଶିଳ୍ପରେ ଯୁଗାନ୍ତର ଆଣିଲା । ରିଗ୍ରଭ୍ର୍ଡ଼ ମୃତ୍ୟୁପୂର୍ବରୁ ଏ ସବୁ ଦେଖି ଯାଇଥିଲେ ଓ ବଞ୍ଚିଥିଲାଯାଏଁ ସ୍ୱ-ଉଦ୍ଭାବିତ କଳର ନିପୁଣତା ବଢ଼ାଇବା ଦିଗରେ ଅଜସ୍ର ଚେଷ୍ଟାକରି ବହୁ ଉନ୍ନତି ସାଧନ କରିଥିଲେ ।

ଏଥିପାଇଁ ରିଗ୍ରଭ୍ର୍ଡ଼ଙ୍କୁ ବହୁ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପ୍ରଥମେ ଏହି କଳ ଅଳ୍ପ ଶ୍ରମିକ ଦରକାର କରୁ-ଥିବାରୁ ଚାରିପାଖରେ ତନ୍ତୁବାୟ ଓ ଅନ୍ୟ ଶ୍ରମିକମାନେ ବେକାର

ହେବା ଆଶଙ୍କାରେ ଏହି କଳକୁ ନିଜର ଶତ୍ରୁ ବୋଲି ଭାବିଥିଲେ ଏବଂ ଗୋଟାଏ ଜାଗାରେ ତାଙ୍କର ସମଗ୍ର କାରଖାନାକୁ ଭାଙ୍ଗି ପକାଇଥିଲେ । ତାଙ୍କ କଳର ଲାଭ ସର୍ବୋତ୍କୃଷ୍ଟ ହୋଇଥିଲେ ହେଁ ବ୍ୟବସାୟୀମାନେ ପ୍ରଥମେ କିଣିବାକୁ ନାରାଜ କଲେ । କେତେକ ଈର୍ଷାପରାୟଣ ଲୋକ ତାଙ୍କ ଉଦ୍ଭାବନର ମୌଳିକତାକୁ ଅପ୍ରମାଣ କରିବାପାଇଁ କୋର୍ଟରେ ମକଦ୍ଦମା ମଧ୍ୟ ଆରମ୍ଭ କଲେ । ରିଚାର୍ଡ଼ ପ୍ରଥମେ ପ୍ରଥମେ ସବୁଆଡ଼େ ପରାଜିତ ହୋଇ ମଧ୍ୟ ଶେଷରେ ବିଜୟୀ ହୋଇଥିଲେ ଏବଂ ଇଂଲଣ୍ଡର ରାଜା ଓ ଲୋକେ କ୍ରମେ ତାଙ୍କୁ ଯଥୋଚିତ ସମ୍ମାନ ଦେବାକୁ ଲାଗିଲେ ।

ରିଚାର୍ଡ଼ କଠୋର ପରିଶ୍ରମ କରିପାରୁଥିଲେ । ପଚାଶ ବର୍ଷ ବୟସରେ ସେ ପ୍ରଥମେ ଇଂରାଜୀ ବ୍ୟାକରଣ ପଢ଼ି ଶିଖିଥିଲେ । ବହୁ କାରଖାନାର ମାଲିକ ଭାବରେ ତାଙ୍କୁ ବାର୍ଦ୍ଧକ୍ୟରେ ମଧ୍ୟ ଭୋର ଚାରିଟାରୁ ରାତି ନ'ଟା ପର୍ଯ୍ୟନ୍ତ ଅକ୍ଳାନ୍ତ ପରିଶ୍ରମ କରିବାର ଦେଖା ଯାଇଛି । ମୃତ୍ୟୁ ପୂର୍ବରୁ ସେ କୋଟି କୋଟି ଟଙ୍କା ସଞ୍ଚୟ କରିଥିଲେ ଓ ନିଜ ଦେଶବାସୀଙ୍କ ପାଇଁ ବିପୁଳ ସମୃଦ୍ଧିର ଏକ ପ୍ରଧାନ ପନ୍ଥା ଫିଟାଇ ଯାଇଥିଲେ । ଜଣେ ଦରିଦ୍ର ନିରକ୍ଷର ନାପିତ ପକ୍ଷରେ ଏହା ସାମାନ୍ୟ ବିସ୍ମୟର କଥା ନୁହେଁ ।

ପ୍ରତ୍ୟେକ ଭାରତବାସୀ ନିକଟରେ ନାପିତ-ପ୍ରବର ସାର୍ ରିଚାର୍ଡ଼ ଆର୍କରାଇଟ୍‌ଙ୍କର ଜୀବନୀ ଓ ଚରିତ୍ର ଆଦର୍ଶ ହୋଇ ରହିବା ଉଚିତ । ଅନେକଙ୍କର ଏହି ଭ୍ରାନ୍ତ ଧାରଣା, 'ଡିଗ୍ରୀ' ହାସଲ କଲେ ବା ଗୋଟାଏ ଚାକିରି ପାଇଲେ, ମନୁଷ୍ୟ ମନୁଷ୍ୟ ହୋଇଯିବ । କିନ୍ତୁ ବିନା ପାଠରେ, ବିନା ଅର୍ଥରେ ମନୁଷ୍ୟ କିପରି ବଡ଼ ହୋଇପାରେ, ଆର୍କରାଇଟ୍ ତାହାର ଜ୍ୱଳନ୍ତ ଉଦାହରଣ ।

## ପ୍ରଶ୍ନ

୧ । ପରିଚୂଳା, ଏକଚ୍ଛତ୍ର, ଗୃହହୀନ—ଏଗୁଡ଼ିକର ଅର୍ଥ ବୁଝାଇ ଦିଅ ।

୨ । "ବିନା ପାଠରେ, ବିନା ଅର୍ଥରେ ମନୁଷ୍ୟ କିପରି ବଡ଼ ହୋଇପାରେ, ଆର୍କରାଇଟ୍ ତାହାର ଜ୍ୱଳନ୍ତ ଉଦାହରଣ"—ଏହି ଉକ୍ତି ଆର୍କରାଇଟ୍‌ଙ୍କଠାରେ କିପରି ସାର୍ଥକ ହୋଇଅଛି, ବୁଝାଇଦିଅ ।

୩ । ଭ୍ରାମ୍ୟମାଣ, ବହୁପ୍ରସୂ, ଜାଜ୍ୱଲ୍ୟମାନ, ଜଳବାୟୁ—ଏଗୁଡ଼ିକର ବ୍ୟୁତ୍ପତ୍ତି ନିର୍ଦ୍ଦେଶ କର ।

---

## ଆତ୍ମୋତ୍କର୍ଷ

ମନୁଷ୍ୟ ପକ୍ଷରେ ଶିକ୍ଷା ପାଇବାର ଦୁଇଟି ପନ୍ଥା ଅଛି । ପ୍ରଥମଟି ହେଉଛି, ବାହାରର କୌଣସି ବ୍ୟକ୍ତି ବା ବହିରୁ ଜ୍ଞାନଲାଭ; ଦ୍ୱିତୀୟଟି ହେଉଛି, ନିଜେ ନିଜକୁ ଶିକ୍ଷା ଦେବା । ଶେଷୋକ୍ତ ପନ୍ଥାହିଁ କେବଳ ଜ୍ଞାନଲାଭ କାହିଁକି, ଜୀବନର ସକଳ କ୍ଷେତ୍ରରେ ସିଦ୍ଧିଲାଭ ପାଇଁ ଯଥାର୍ଥ ଉତ୍କୃଷ୍ଟତର । ପୃଥିବୀରେ ଯେଉଁକାଳରେ, ଯେଉଁ ସ୍ଥାନରେ, ଯେଉଁ ଦିଗରେ, ଯେଉଁ ନାରୀ ବା ନର ଜ୍ଞାନ, କଳା, ଧର୍ମ, ସାହିତ୍ୟ, ରାଜନୀତି ବା ବ୍ୟବସାୟରେ ବୃଦ୍ଧି ଓ ପ୍ରସିଦ୍ଧି ଲାଭ କରିଛନ୍ତି, ସେଠି ଆତ୍ମୋତ୍କର୍ଷ ହିଁ ସର୍ବପ୍ରଧାନ କାରଣ ଥିବାର ଦେଖାଯାଏ । ଅନେକଙ୍କର ଧାରଣା, ଜନ୍ମଗତ ପ୍ରତିଭା ହିଁ ଜୀବନରେ ସକଳ ଅଭ୍ୟୁଦୟର ମୂଳ । କିନ୍ତୁ ବିସ୍ମୟର କଥା ଏହି ଯେ, ପ୍ରତିଭାବନ୍ତ ଲୋକମାନେ ହିଁ ସାଧାରଣ ଲୋକଙ୍କଠାରୁ ବହୁତର ଶ୍ରମ

ଓ ଅଧ୍ୟବସାୟ କରିବାର ବିସ୍ତର ଦେଖାଯାଏ । ପ୍ରତିଭାବାନ୍ ଲୋକମାନଙ୍କର କର୍ମ-ପ୍ରଣାଳୀ ଆଲୋଚନା କରି ଅନେକେ ପ୍ରତିଭାର ସଂଜ୍ଞା ଦେଇଥାନ୍ତି, ଅଲୌକିକ ସାମାନ୍ୟ ଶ୍ରମ-ଶକ୍ତି । ଏହା ଯେ ବହୁ ପରିମାଣରେ ସତ୍ୟ, ଏଥିରେ ଦ୍ୱିମତ ନ ଥାଇପାରେ । ଆମ ବାପୁଜୀଙ୍କର ଇଂରେଜୀ ରଚନାର ମାଧୁର୍ଯ୍ୟରେ ସମଗ୍ର ସଭ୍ୟଜଗତ ମୁଗ୍ଧ ହୋଇଥିଲା । ସେ ନିଜେ କହିଛନ୍ତି ଯେ, ଦକ୍ଷିଣ-ଆଫ୍ରିକାରେ ଦୀର୍ଘ କୋଡ଼ିଏ ବର୍ଷର ନିରବଛିନ୍ନ ସାଧନା ଫଳରେ ହିଁ ସେ ଗୋଟିଏ ବିଦେଶୀ ଭାଷାରେ ଏହି ଅଧିକାର ପାଇଥିଲେ ।

ପରିଶ୍ରମର ଅସାଧ୍ୟ କିଛି ନାହିଁ । ଅନେକ ପରିଶ୍ରମ କରନ୍ତି, କିନ୍ତୁ ଫଳ ନ ପାଇ ହତାଶ ହୁଅନ୍ତି, ଭାଗ୍ୟକୁ ନିନ୍ଦା କରନ୍ତି । କିନ୍ତୁ ଶ୍ରମହିଁ ଭାଗ୍ୟ—ଶ୍ରମରେ ନିଃଶେଷତା ଓ ଅଭ୍ରାନ୍ତି ରହିଲେ ହିଁ ତାହା ଭାଗ୍ୟଲକ୍ଷ୍ମୀ ରୂପେ ସକଳ ବରଦାନ କରେ । ଆମ୍ଭେମାନେ ଦେଖୁଁ ଯେ ଅନେକେ ଏଣୁ ତେଣୁ କରି ସବୁବେଳେ କିଛି ନା କିଛି ପଢୁଥାନ୍ତି, ରାତରେ ଉନ୍ନିଦ୍ର ହୋଇ ମଧ୍ୟ ପଢ଼ନ୍ତି । କିନ୍ତୁ ସେମାନେ ପଣ୍ଡିତର ସମ୍ମାନ ପାଆନ୍ତି ନାହିଁ ବା ତାଙ୍କ ଅଧ୍ୟୟନ କୌଣସି ଫଳ ପ୍ରସବ କରିପାରେ ନାହିଁ । ତାହାର କାରଣ ହେଉଛି, ଉକ୍ତ ବ୍ୟକ୍ତିମାନଙ୍କର ଶ୍ରମରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ବା ଅଧ୍ୟୟନରେ ଏକାଗ୍ରତା ନ ଥାଏ । ଗୋଟିଏ ବିଷୟ ଧରିବ ଓ ସେ ବିଷୟଟିର ଛୋଟ ବଡ଼ ଯାହା କିଛି ଜ୍ଞାତବ୍ୟ, ତାହା ଆୟତ୍ତ ନ ହେଲା ପର୍ଯ୍ୟନ୍ତ ଅନ୍ୟ ବିଷୟ ଧରିବ ନାହିଁ—ଏହି ଗୁଣର ନାମ ନିଃଶେଷତା । ଯାହା ଜାଣିବ, ତାହା ସମ୍ପୂର୍ଣ୍ଣ ଭ୍ରମଶୂନ୍ୟ ହେବା

ଉଚିତ—ଏହାହିଁ ଅଭ୍ରାନ୍ତ । ଏ ସ୍ଥିତରେ ଜ୍ଞାନ ଆହରଣ ଗତି ଧୀରମନ୍ଥର ହୋଇପାରେ; କିନ୍ତୁ ଏହାହିଁ ପ୍ରକୃଷ୍ଟ ଫଳପ୍ରସୂ ପନ୍ଥା । ଜଣେ ପ୍ରସିଦ୍ଧ ଆଇନ-ବ୍ୟବସାୟୀ କହିଛନ୍ତି ଯେ, ଛାତ୍ରାବସ୍ଥାରେ ତାଙ୍କର ସାଙ୍ଗମାନେ ଯାହା ଘଣ୍ଟାକରେ ପଢ଼ିଯାନ୍ତି, ତାହା ପଢ଼ିବାକୁ ତାଙ୍କୁ ସପ୍ତାହେ ଲାଗୁଥିଲା; ସେମାନେ ମାସକରେ ଯାହା ପଢ଼ି ଦେଉଥିଲେ ବୋଲି ଭାବୁଥିଲେ, ତାହା ଆୟତ୍ତ କରିବାକୁ ତାଙ୍କୁ ପୂରା ବର୍ଷେ ଲାଗୁଥିଲା; କିନ୍ତୁ ଫଳରେ ଦେଖାଯାଉଥିଲା, ଯେଉଁ ସାଙ୍ଗମାନେ ବର୍ଷକ ପାଠ ମାସକରେ ଶେଷ କରି ଦେଉଥିଲେ, ସେମାନେ ସେହି ପାଠ ମାସକରେ ହିଁ ଭୁଲି ଯାଉଥିଲେ । ମାତ୍ର ସେ ଯେଉଁସବୁ ଜ୍ଞାତବ୍ୟ ବିଷୟ ତନ୍ନ ତନ୍ନ କରି ଧୀରେ ଧୀରେ ଆୟତ୍ତ କରୁଥିଲେ, ତାହା ତାଙ୍କ ସ୍ମୃତିରେ ଚିର ସଚେତଜ ରହୁଥିଲା ।

ଅନେକଙ୍କର ଧାରଣା ମଧ୍ୟ ଅଛି ଯେ, ପୁସ୍ତକଜ୍ଞାନ ନ ଥିଲେ ବା ଗୁଡ଼ାଏ ବହି ନ ପଢ଼ିଲେ ମନୁଷ୍ୟ ସଭ୍ୟ, ଶିକ୍ଷିତ ହୋଇ ନ ପାରେ ବା ଜୀବନରେ ପ୍ରସିଦ୍ଧି ଲାଭ କରି ନ ପାରେ । ଏହା ଏକାବେଳକେ ଭ୍ରାନ୍ତ ଧାରଣା । ମହମ୍ମଦ, ଯୀଶୁଖ୍ରୀଷ୍ଟ, ରାମକୃଷ୍ଣ ପରମହଂସ, ଆକବର, ଶିବାଜୀ ପ୍ରଭୃତି ଜଗତର ଅନେକ ମହାମାନବ ନିରକ୍ଷର ଥିଲେ । ରେଳ ଇଞ୍ଜିନ୍‌ର ଉଦ୍ଭାବକ ଷ୍ଟିଫେନ୍‌ସନ୍ ୧୧।୧୨ ବର୍ଷ ବୟସ ପର୍ଯ୍ୟନ୍ତ ନିରକ୍ଷର ଥିଲେ ଏବଂ ପରେ ସମଗ୍ର ଜଗତରେ ପ୍ରସିଦ୍ଧ ଓ ସମଗ୍ର ଇଂରାଜ ଜାତିଦ୍ୱାରା ସମ୍ମାନିତ ହେବା ଅବସ୍ଥାରେ ମଧ୍ୟ ଖୁବ୍ ଅଳ୍ପ ବହି ପଢ଼ୁଥିଲେ । ଯେଉଁ ଓଡ଼ିଆ କାରିଗରମାନେ କୋଣାର୍କ ଓ ଭୁବନେଶ୍ୱରରେ

ବିଶ୍ୱ-ବିଖ୍ୟାତ ଶିଳ୍ପ ସୃଷ୍ଟି କରି ଯାଇଛନ୍ତି ସେମାନେ ବଡ଼ ପାଠୁଆ ବା ଉପାଧିଧାରୀ ନ ଥିଲେ; ଖୁବ୍ ସମ୍ଭବ, ସେମାନଙ୍କ ଭିତରୁ ଅଧିକାଂଶହିଁ ନିରକ୍ଷର ଥିଲେ । ଜୀବନରେ ବଡ଼ ହେବା-ପାଇଁ ଗୁଡ଼ାଏ ପୁସ୍ତକ ଗିଳି ବିଦ୍ୟା-ଅଜୀର୍ଣ୍ଣତା ସୃଷ୍ଟି କରିବାର କିଛି ଦରକାର ନାହିଁ । ଦରକାର ଗୋଟିଏ ଲକ୍ଷ୍ୟରେ ଏକାଗ୍ରତା ଓ ନିରବଚ୍ଛିନ୍ନ ଅଧ୍ୟବସାୟ ଏବଂ ସାଧୁତା, ସତ୍ୟବାଦିତା, ନୈତିକତା ପ୍ରଭୃତି ମନୁଷ୍ୟ ଚରିତ୍ରର ଅପରିହାର୍ଯ୍ୟ ପ୍ରୟୋଜନ-ଗୁଡ଼ିକର ଅନୁଯୋଜନ ।

ଆମ୍ଭମାନଙ୍କର ଆଉ ଏକ ଧାରଣା ଅଛି ଯେ, ସଭ୍ୟ ଶିକ୍ଷିତ ହେବାପାଇଁ ବା ଜୀବନରେ କୌଣସି କର୍ମରେ ସିଦ୍ଧିଲାଭ ପାଇଁ ଶାରୀରିକ ପରିଶ୍ରମର ଆବଶ୍ୟକତା ନାହିଁ । ଏ ଧାରଣା ମଧ୍ୟ ଏକାନ୍ତ ଭ୍ରାନ୍ତ । ଜୀବନର ପ୍ରତ୍ୟେକ ବିଭାଗରେ ପୂର୍ଣ୍ଣତମ ସିଦ୍ଧିର ସୌକର୍ଯ୍ୟ ପାଇଁ ପ୍ରଥମେ ଲୋଡ଼ା, କର୍ମନିଷ୍ଠ ଶରୀର ଓ ନିଖୁଣ ସ୍ୱାସ୍ଥ୍ୟ । ଏଥିପାଇଁ ପ୍ରତ୍ୟହ କିଛି ନା କିଛି ଶାରୀରିକ ଶ୍ରମ ନିତାନ୍ତ ଆବଶ୍ୟକ । ସେହି ଲୋକ ପ୍ରକୃତ ଆତ୍ମୋତ୍କର୍ଷ ଲାଭ କରିଛି, ଯାହାର ହାତ ଓ ମସ୍ତିଷ୍କ ଉଭୟ ସମାନ ଭାବରେ କର୍ମ-କୁଶଳ ଏବଂ ଯେ କ୍ଳାନ୍ତିଜନକ, ମାନସିକ ଓ କାୟିକ କୌଣସି ଶ୍ରମ କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ଆମର ବାପୁଜୀ ଏହାର ଚୂଡ଼ାନ୍ତ ଓ ମହନୀୟ ନିଦର୍ଶନ । ଯିଶୁଖ୍ରୀଷ୍ଟ ପିଲାଦିନେ ବଢ଼େଇ-ବାପାର କର୍ମଶାଳାରେ କାଠ କାମ କରି ପିତାଙ୍କୁ ସାହାଯ୍ୟ କରୁଥିଲେ; କୌଣସି କୌଣସି ନୂତନ ମସଜିଦ୍ ତିଆରି ହେଲା-ବେଳେ ମହମ୍ମଦ ତାଙ୍କର ଭକ୍ତମାନଙ୍କ ସହ ନିଜ ମୁଣ୍ଡରେ ଇଟା ବୋହୁଥିଲେ । ପ୍ରସିଦ୍ଧ ବୈଜ୍ଞାନିକ ନିଉଟନ୍ ଗ୍ରାମ୍ୟ ପାଠଶାଳାରେ

ଏକ ବୋକା ପିଲା ବୋଲି ଧରା ହେଉଥିଲେ ସତ, କିନ୍ତୁ କାଷ୍ଠ ଓ ଧାତୁର ନାନାପ୍ରକାର ଉପକରଣ, ଯନ୍ତ୍ର ବା ଖେଳନା କରିବାରେ ତାଙ୍କ ହାତ ଓ ଆଙ୍ଗୁଳି ବରାବର ବ୍ୟସ୍ତ ଥାଏ । ପିଲାଦିନର ଏହି ହସ୍ତ-କର୍ମପଟୁତା ପରଜୀବନରେ ତାଙ୍କୁ ବିଶେଷ ଭାବରେ ସାହାଯ୍ୟ କରିଥିଲା ।

ପୁସ୍ତକଗତ ଜ୍ଞାନ ଓ ଶାରୀରିକ ଶକ୍ତି ଉଭୟେ ମନୁଷ୍ୟର ଦୁର୍ଗତିର କାରଣ ହୋଇପାରନ୍ତି; ଯଦି ଏହି ଜ୍ଞାନ ଓ ଶକ୍ତି ଗୁଡ଼ିକ ନୈତିକ ମହତ୍ତ୍ୱ ଉପରେ ପ୍ରତିଷ୍ଠିତ ନ ହୁଅନ୍ତି । ଦୁଷ୍ଟ, ଦୁଶ୍ଚରିତ୍ର ଲୋକଙ୍କର ଜ୍ଞାନ ହିଁ ମୂର୍ଖତା ଓ ଶାରୀରିକ ଶକ୍ତି ପଶୁତ୍ୱ ମାତ୍ର । କଥାରେ କହନ୍ତି—ଜ୍ଞାନ ହିଁ ଶକ୍ତି; କିନ୍ତୁ ଜାତି ଓ ବ୍ୟକ୍ତି ପକ୍ଷରେ କଲ୍ୟାଣପ୍ରସୂ ହେବ, କେବଳ ସେହି ଜ୍ଞାନ ଓ ଶକ୍ତି ଯାହା ବିନୟ, ସଂଯମ, ତ୍ୟାଗ ଓ ଉପଚିକୀର୍ଷା ପ୍ରଭୃତି ଉପରେ ପ୍ରତିଷ୍ଠିତ । ସଂଯମ ହିଁ ମନୁଷ୍ୟର ପଶୁତ୍ୱ ଲୋପ କରି ମନୁଷ୍ୟତ୍ୱ ଓ ଦେବତ୍ୱ ପ୍ରତିଷ୍ଠା କରାଏ । ପ୍ରତ୍ୟେକ ବ୍ୟକ୍ତିର ଆତ୍ମ-ସମ୍ମାନ ବୋଧ ଏପରି କର୍ଷିତ ହେବା ଉଚିତ, ଯେପରି କି ତାହା ବୃଥା ଅହମିକାରେ ବର୍ଯ୍ୟବସିତ ନ ହୋଇ ନିଜକୁ ନୀଚତା ଓ ଇତର ପ୍ରଲୋଭନରୁ ରକ୍ଷା କରିବ । "ଏ ଶରୀର ମୋର ପବିତ୍ର ଓ ବହୁମୂଲ୍ୟ । ଏହା ଜଗତର କଲ୍ୟାଣରେ ଲାଗିବା ପାଇଁ ଅଭିପ୍ରେତ । ତାକୁ କିଅଣ ଏଇ କ୍ଷଣିକ ତୁଚ୍ଛ ପ୍ରଲୋଭନରେ କଳୁଷିତ ଓ ଅପଦାର୍ଥ କରିଦେବି ?"—ପ୍ରତ୍ୟେକ ଯୁବକ ଓ ଯୁବତୀ ଏହିପ୍ରକାର ଆତ୍ମସମ୍ମାନବୋଧ ନିଜ ନିଜ ଅନ୍ତରରେ ଜାଗ୍ରତ ରଖିଲେ ଆତ୍ମୋତ୍କର୍ଷ ସହଜ ହେବ । ପର ନିକଟରେ ଭିକ୍ଷା କରିବା, ସାମାନ୍ୟ ଲାଭ ପାଇଁ ପରର ସ୍ତୁତି କରିବା ବା ନିଜ ଚରିତ୍ରକୁ ବଳି ଦେବା ଅପେକ୍ଷା ନିଜର

ଶ୍ରମଲବ୍ଧ ଖାଦ୍ୟରେ ବଞ୍ଚିବାକୁ ପ୍ରସ୍ତୁତ ହେବା ପ୍ରକୃତ ଆତ୍ମୋତ୍କର୍ଷ ଓ ସଭ୍ୟତାର ଚିହ୍ନ ।

ଶ୍ରମ ଓ ସାଧନାର ଅସାଧ୍ୟ କିଛି ନାହିଁ । ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ସାଧନା ବଳରେ ଅନେକ ଲୋକ ନିତାନ୍ତ ଦରିଦ୍ର ଶ୍ରମିକ ଅବସ୍ଥାରୁ ରାଷ୍ଟ୍ର ଓ ସମାଜରେ ଶୀର୍ଷସ୍ଥାନ ଲାଭ କରିଅଛନ୍ତି ଏବଂ ଏବେ ମଧ୍ୟ କରୁଛନ୍ତି । ଭାଗ୍ୟଲକ୍ଷ୍ମୀଙ୍କି ସନ୍ତୁଷ୍ଟ କରିବାର ବିଶିଷ୍ଟ ପୂଜା ହେଉଛି ଆତ୍ମ-ଚେଷ୍ଟା । ଆମ ଦେଶରେ ଏହି ଏକାଗ୍ର ଆତ୍ମ-ଚେଷ୍ଟାର ଅତ୍ୟନ୍ତ ଅଭାବ । ଲୋକେ ବିନା ଶ୍ରମରେ ଧନ, ମାନ ପାଇବା ପାଇଁ ବଡ଼ ବ୍ୟଗ୍ର । କିନ୍ତୁ ସୃଷ୍ଟିର ନିୟମ ତାହା ନୁହେଁ । ଏଠି ସକଳ ପ୍ରକାର ସିଦ୍ଧି ବା ପ୍ରସିଦ୍ଧି ପାଇଁ ସୁଦୀର୍ଘ କଠୋର ସାଧନାହିଁ ଏକମାତ୍ର ପନ୍ଥା । ଏହି ପଥ ପ୍ରଥମେ କ୍ଳେଶକର ଓ କ୍ଳାନ୍ତିଦାୟକ ହୋଇପାରେ; କିନ୍ତୁ ଏହାହିଁ ସୁଖ, ଆନନ୍ଦ ଓ ପ୍ରକୃତ ସମ୍ମାନର ପଥ । ଆଉ ସବୁ ମାନ-ସମ୍ମାନ ଅହେତୁ ବିଡ଼ମ୍ବନା ।

## ପ୍ରଶ୍ନ

୧ । "ପୁସ୍ତକଗତ ଜ୍ଞାନ ଓ ଶାରୀରିକ ଶକ୍ତି ଉଭୟେ ମନୁଷ୍ୟର ଦୁର୍ଗତିର କାରଣ ହୋଇ ପାରନ୍ତି, ଯଦି ଜ୍ଞାନ ଓ ଶକ୍ତି ଗୁଡ଼ିକ ମହତ୍ତ୍ୱ ଉପରେ ପ୍ରତିଷ୍ଠିତ ନ ହୁଅନ୍ତି"—ଏହି ଉକ୍ତିକୁ ବିଶଦ ଭାବେ ବୁଝାଇ ଲେଖ ।

୨ । ରିଦ୍ଧି, ଉପଚିକୀର୍ଷା, ସୌକର୍ଯ୍ୟ, ପର୍ଯ୍ୟବସିତ—ଏହି ପଦ-ଗୁଡ଼ିକର ବ୍ୟୁତ୍ପତ୍ତି ନିର୍ଦ୍ଦେଶ କର ।

୩ । ଲେଖକଙ୍କ ମତରେ 'ନିଃଶେଷତା' କାହାକୁ କହନ୍ତି ?

୪ ବର୍ଷ-ବସୁଯୁକାସ୍ତ୍ର, ବସ୍ତ୍ରକର୍ମପଟୁତା, ଅଲୋକସାମାନ୍ୟ—ଏ ପଦଗୁଡ଼ିକର ସମାସ ନାମ ଓ ବ୍ୟାସବାକ୍ୟ ପ୍ରଦର୍ଶନପୂର୍ବକ ଲେଖ ।

୫ । କି ପ୍ରକାର ଶିକ୍ଷା ଆତ୍ମୋତ୍କର୍ଷ ଲାଭର ସହାୟକ ?

-୪୦ଃ-

# ଉଇଲିୟମ୍ କେରୀ

ଅସାଧାରଣ ବୁଦ୍ଧି ବା ପ୍ରଚୁର ଧନ ନ ଥାଇ ମଧ୍ୟ ଲୋକ ଯେ ମହତ୍ତ୍ୱ କାର୍ଯ୍ୟ ସମ୍ପାଦନ କରିପାରେ, ଭାରତର ପ୍ରଥମ ଖ୍ରୀଷ୍ଟାନ୍ ମିସିନାରୀ ଉଇଲିୟମ୍ କେରୀଙ୍କ ପବିତ୍ର ଜୀବନ ତାହାର ଏକ ଉତ୍କୃଷ୍ଟ ଦୃଷ୍ଟାନ୍ତ । ଦରିଦ୍ର ମୋଚି ହୋଇ ଓ ବିଶେଷ ଶିକ୍ଷା ନ ପାଇ ମଧ୍ୟ କେବଳ ଅଧ୍ୟବସାୟ ଓ ଗଭୀର ଈଶ୍ୱର-ବିଶ୍ୱାସ ବଳରେ କେରୀ ଯାହା କରି ଯାଇଛନ୍ତି, ତାହା ଯେପରି ବିସ୍ମୟକର, ସେହିପରି ଉତ୍ସାହଜନକ ।

ଇଂଲଣ୍ଡର ନର୍ଥାମ୍ପଟନ୍‌ସାୟାରର ଗୋଟିଏ କ୍ଷୁଦ୍ର ପଲ୍ଲୀରେ ଉଇଲିୟମ୍ କେରୀ ୧୭୬୧ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ତନ୍ତୁବାୟ ବ୍ୟବସାୟ କରୁଥିଲେ ଏବଂ ସେହି ଥିଲେ, ବାଳକ ଉଇଲିୟମ୍‌ର ପ୍ରଥମ ଓ ଶେଷ ଶିକ୍ଷକ । ବାଳକ ପିତାଙ୍କ ନିକଟରୁ ସାମାନ୍ୟ ଭାବରେ ପଢ଼ିବା ଓ ଲେଖିବା ଛଡ଼ା ଅଧିକ କିଛି ଶିଖିପାରି ନ ଥିଲା । ବାରବର୍ଷ-ବୟସର ଉଇଲିୟମ୍‌କୁ ଜୀବିକାର୍ଜନ ପାଇଁ ଅନ୍ୟର କୃଷିକ୍ଷେତ୍ରରେ କାମ କରିବାକୁ ପଡ଼ିଥିଲା । ଚତୁର୍ଦ୍ଦଶ-ବର୍ଷ-ବୟସରେ ସେ ଜନୈକ ମୋଚି ନିକଟରେ ଶିକ୍ଷା

ନବାଶ୍ ରହି ପରିବାର ପୋଷଣରେ ଅନେକ ବର୍ଷ କଟାଇଥିଲେ ।

କିନ୍ତୁ ଅଳ୍ପଶିକ୍ଷିତ ଦରିଦ୍ର ମୋଚି ଉଇଲ୍‌ୟମ୍‌ର ପ୍ରାଣରେ ଗଭୀର ଧର୍ମଭାବ ସବୁବେଳେ ନିଃସ୍ୟନ୍ଦିତ ହେଉଥାଏ ଏବଂ ବେଳେ ବେଳେ ଧର୍ମପ୍ରଚାରକ ଭାବରେ ଜୀବନ କଟାଇବାକୁ ତାର ପ୍ରବଳ ଇଚ୍ଛା ଜାତହୁଏ । ତା ଛଡ଼ା ବିଶେଷରେ ଭ୍ରମଣ କରି ନବ ନବ ଅଭିଜ୍ଞତା ଅର୍ଜନ କରିବାପାଇଁ ମଧ୍ୟ ସେହି ଦରିଦ୍ର ତରୁଣର ଗଭୀର ବାସନା ଥିଲା । ବିଶେଷତଃ ଇଷ୍ଟ ଇଣ୍ଡିଆ କମ୍ପାନୀର ବାଣିଜ୍ୟ ବିସ୍ତାର ଫଳରେ ଯେଉଁ ଭାରତବର୍ଷର କଥା ବିଲାତର ସବୁଆଡ଼େ ସର୍ବସମ୍ମୁଖରେ କଥିତ ହେଉଥାଏ, ଉଇଲ୍‌ୟମ୍‌ଙ୍କର ଇଚ୍ଛା ସେହି ଭାରତବର୍ଷକୁ ଯାଇ କପର ଦେଖି ଆସନ୍ତେ । ଦୋକାନରେ ବସି ଯୋତାରେ କଣ୍ଟା ବାହେଇଲାବେଳେ ଉଇଲ୍‌ୟମ୍‌ଙ୍କ ପାଖରେ ସବୁବେଳେ ଖଣ୍ଡେ ନା ଖଣ୍ଡେ ବହି ମେଲା ହୋଇ ରହିଥାଏ । ଦୋକାନ ବନ୍ଦ ହେଲା ପରେ ଉଇଲ୍‌ୟମ୍ ଛିଣ୍ଡା ଚମଡ଼ା ସବୁ ଏକାଠି କରି ବେଳେ ବେଳେ ଗ୍ଲୋବ ରଚନା କରୁଥିଲେ ଏବଂ ତାହାକୁ ସଜ୍ଞାନ୍ତ ନୟନରେ ନିରୀକ୍ଷଣ କରି ଭିନ୍ନ ଭିନ୍ନ ଦେଶରେ ମନେ ମନେ ଭ୍ରମଣ କରୁଥିଲେ ।

ସଦିଚ୍ଛାର ସହାୟ ଭଗବାନ । କୌଣସି ସାଧୁ ବାସନା ଅପୂର୍ଣ୍ଣ ରହେ ନାହିଁ । କ୍ରମେ ଉଇଲ୍‌ୟମ୍‌ଙ୍କର ଧର୍ମଭାବ ଏତେ ପ୍ରବଳ ହେଲା ଯେ, ସେ ମୋଚି ବ୍ୟବସାୟ ଛାଡ଼ି ପାଦ୍ରୀ ହୋଇଗଲେ । ଏହା କରିବା ତାଙ୍କ ପକ୍ଷରେ ସାହସିକତା କୁହାଯିବ । କାରଣ ପାଦ୍ରୀମାନଙ୍କର ଦରମା ସାଧାରଣତଃ ଅତି ସାମାନ୍ୟ । ଇତିପୂର୍ବେ ଉଇଲ୍‌ୟମ୍ ବିବାହ କରି ସାରିଥିଲେ

ପନ୍ଦର ବର୍ଷରେ ବ୍ୟବସାୟ ଛାଡ଼ି ଦରିଦ୍ର ପାଦ୍ରୀ-ଜୀବନ ସେ କିପରି କଟାଇବେ ? ପୁଣି ଉଇଲିୟମ୍ ଜଣେ ଅଳ୍ପଶିକ୍ଷିତ ମୋଚି । ପାଦ୍ରୀ ହେଲେ ଗ୍ରୀକ, ଲାଟିନ୍, ହିବ୍ରୁ ପ୍ରଭୃତି ଭାଷା ଉତ୍ତମରୂପେ ଜାଣିଥିବା ଆବଶ୍ୟକ । ଉଇଲିୟମ୍‌ଙ୍କୁ ଏ କଥା ଜଣା ନ ଥିଲା ।

ଉଇଲିୟମ୍ କିନ୍ତୁ ଦବିବାର ଲୋକ ନୁହନ୍ତି । ସେ ଦରିଦ୍ର ଜୀବନକୁ ଅକୁଣ୍ଠିତ ଚିତ୍ତରେ ବରଣ କରିନେଇ ଗ୍ରୀକ୍, ଲାଟିନ୍, ହିବ୍ରୁ ପ୍ରଭୃତି ଭାଷାମାନଙ୍କୁ ଆୟତ୍ତ କରିବାରେ ଲାଗିଗଲେ । କିଛି-କାଳ ପରେ ଗୋଟିଏ ଖ୍ରୀଷ୍ଟୀୟ ସଭାରେ ଖ୍ରୀଷ୍ଟଧର୍ମର ପ୍ରଚାର ପାଇଁ ଭାରତବର୍ଷକୁ ମିସନାରୀ ବା ଧର୍ମପ୍ରଚାରକ ପଠାଯିବାର ସ୍ଥିର ହେଲା । ସଭା ମଧ୍ୟରେ ଉଇଲିମ୍ କେରୀ ଯେତେବେଳେ ଭାରତ-ବର୍ଷକୁ ଖ୍ରୀଷ୍ଟଧର୍ମର ପ୍ରସାର ପାଇଁ ଯିବାକୁ ନିଜ ନାମ ପ୍ରସ୍ତାବ କଲେ, ସଭାପତି ମୋଚି କେରୀର ଉଦ୍ଭଟ ଅଭିମାନ ସାହସ ଦେଖି ହସି ଉଠିଲେ । କିନ୍ତୁ ଉଇଲିୟମ୍‌ଙ୍କର ସାଧୁ ଚରିତ୍ର, ଅକୃତ୍ରିମ ନିଷ୍ଠା ଓ ଅଧ୍ୟବସାୟ କଥା ଯେଉଁମାନେ ଜାଣିଥିଲେ, ସେମାନେ ତାଙ୍କ ସପକ୍ଷରେ କହିବାକୁ ଲାଗିଲେ ଏବଂ ଅଧିକ ସଂଖ୍ୟକ ସଭ୍ୟଙ୍କ ମତରେ ମୋଚି ଉଇଲିୟମ୍ କେରୀ ଜଣେ ସହକାରୀ ସହିତ ଭାରତବର୍ଷରେ ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ ପ୍ରଥମ ମିସନାରୀ ନିର୍ବାଚିତ ହେଲେ । ବର୍ତ୍ତମାନ କେରୀଙ୍କ ଆନନ୍ଦ କହିହେବ ନାହିଁ ।

ଖ୍ରୀଷ୍ଟଧର୍ମ ପ୍ରଚାର କରି ବସିଲେ କାଳେ ଭାରତୀୟମାନଙ୍କ-ଆଡ଼ୁ କମ୍ପାନୀର ବାଣିଜ୍ୟ ସମ୍ପର୍କରେ ବାଧା ଆସିବ, ଏଥିପାଇଁ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତବର୍ଷକୁ ମିସନାରୀ ପଠାଇବା ଆଦୌ ପସନ୍ଦ କଲେ ନାହିଁ । ତେଣୁ କେରୀ ଯେତେବେଳେ

ଇଷ୍ଟ ଇଣ୍ଡିଆ କମ୍ପାନୀ ଅଫିସକୁ ଯାଇ କମ୍ପାନୀର ଭାରତଗାମୀ କୌଣସି ଜାହାଜରେ ଯିବାକୁ ଅନୁମତି ମାଗିଲେ, କମ୍ପାନୀର କର୍ତ୍ତୃପକ୍ଷ ତାହାଙ୍କୁ ଏକାବେଳକେ ନାସ୍ତି କରିଦେଲେ । ଏହି ସମୟରେ ଗୋଟିଏ ଦିନାମାର ଜାହାଜ ଭାରତବର୍ଷକୁ ଆସୁଥିଲା । ଭାଗ୍ୟକ୍ରମେ ସେ ଜାହାଜର କାପ୍ତାନ କେରି ଓ ତାଙ୍କର ଦଳକୁ ନେଇଯିବା ପାଇଁ ସମ୍ମତ ହେଲେ । ଏହି ଦିନାମାର ଜାହାଜରେ କେରି, ତାଙ୍କର ପତ୍ନୀ, ଚାରିଟି ସନ୍ତାନ ଏବଂ ତାଙ୍କର ସହକାରୀ ଟମାସଙ୍କୁ ଘେନି ଯେତେବେଳେ କଲିକତାରେ ପହଞ୍ଚିଲେ, କଲିକତାର ଇଂରେଜ କର୍ତ୍ତୃପକ୍ଷ କେରି ଓ ତାଙ୍କ ଦଳକୁ ସେଠାରେ ଓହ୍ଲାଇବାକୁ ଦେଲେ ନାହିଁ । କେରି ଓ ତାଙ୍କ ଦଳ ଦିନାମାର ଉପନିବେଶ ଶ୍ରୀରାମପୁରରେ ଯାଇ ଅବତରଣ କଲେ ।

ଭାରତରେ ପହଞ୍ଚିଲାବେଳକୁ କେରିଙ୍କର ସ୍ୱଳ୍ପପରିମିତ ପୁଞ୍ଜି ନିଃଶେଷିତ ହୋଇ ଆସିଥିଲା । ସେ ସମୟରେ ଭାରତବର୍ଷ ଓ ଇଂଲଣ୍ଡକୁ ଯିବାଆସିବାକୁ ୧୦ ମାସରୁ କମ୍ ଲାଗୁ ନ ଥିଲା । ଆଉ କିଛିଏ ଟଙ୍କା ପାଇବାକୁ କେରିଙ୍କୁ ପ୍ରାୟ ଦଶ ମାସ ଅପେକ୍ଷା କରିବାକୁ ପଡ଼ିବ । ଅଜ୍ଞାତ ବିଦେଶରେ ଏତେଗୁଡ଼ିଏ ଲୋକ ଚଳିବେ କିପରି  ଏଣେ କେରିଙ୍କ ସହଧର୍ମିଣୀ ରୋଗ-ଶଯ୍ୟାରେ ଶାୟିତା । କିନ୍ତୁ ବିଧାତାଙ୍କର କରୁଣାଶୀଳତାରେ କେରି ଗଭୀର ବିଶ୍ୱାସ ରଖି ଏହି ପୁଞ୍ଜୀଭୂତ ବାଧାବିଘ୍ନର ସମ୍ମୁଖୀନ ହେଲେ । ବିଧାତାଙ୍କର କରୁଣାର ନିଦର୍ଶନ ସ୍ୱରୂପ ଏହି ସଙ୍କଟ ସମୟରେ ମାଲଦା ଜିଲ୍ଲାର ଜଣେ ସାହେବ କେରିଙ୍କୁ ତନ୍ତ୍ୟ

ଗୋଟିଏ ନୀଳ କୋଠିର ମ୍ୟାନେଜର ପଦରେ ନିଯୁକ୍ତ କଲେ । କେରି ଅର୍ଥ-ସଙ୍କଟରୁ ତ ରକ୍ଷା ପାଇଲେ, ତା' ଛଡ଼ା ନୀଳ କୋଠିର ମ୍ୟାନେଜର ଭାବରେ ଭାରତର ପଲ୍ଲୀବାସୀମାନଙ୍କ ସହ ମିଶିବାର ସୁଯୋଗ ଥିବାରୁ ଏହି ପଦ ଗ୍ରହଣ କରିବାରେ ତାଙ୍କର ବିଶେଷ ଉତ୍ସାହ ଥିଲା ।

ଅର୍ଥ କୃଚ୍ଛ୍ରତାରୁ ମୁକ୍ତପାଇ କେରି ବର୍ତ୍ତମାନ ତାଙ୍କର ସାଧନା ଆରମ୍ଭ କଲେ । ତାଙ୍କର ଲକ୍ଷ୍ୟ ହେଲା; ଖ୍ରୀଷ୍ଟଧର୍ମଗ୍ରନ୍ଥ ବାଇବେଲ୍‌କୁ ଯେତୋଟି ସମ୍ଭବ ସେତେଟି ଭାରତୀୟ ଭାଷାରେ ଅନୂଦିତ କରିବା । ଏଥିପାଇଁ ଯେଉଁ ଭାଷାରେ ବାଇବେଲ୍ ଅନୁବାଦ କରିବାର କଥା, ସେ ଭାଷାଟି ତାଙ୍କୁ ଶିଖିବାକୁ ହେଉଥିଲା । 'ଏହିପରି ଦଶବର୍ଷ ଭିତରେ ସେ ଛବିଶଟି ଭାଷା ଆୟତ୍ତ କରିଥିଲେ । ସେ ସମୟକୁ ଅତ୍ୟଳ୍ପ ଭାରତୀୟ ଭାଷାର ବିଧିବଦ୍ଧ ବ୍ୟାକରଣ ଥିଲା । ଏମାନଙ୍କର ବନାନ୍, ଗଦ୍ୟରଚନାର ରୀତି ମଧ୍ୟ ବିଧିବଦ୍ଧ ହୋଇ ନ ଥିଲା । ଉଇଲିୟମ୍ କେରିଙ୍କୁ ଦେଶୀୟ ପଣ୍ଡିତମାନଙ୍କ ସହାୟତାରେ ଏ ସମସ୍ତ କରିବାକୁ ହୋଇଥିଲା । ମାରାଠୀ, ପଞ୍ଜାବୀ, ବୃଟାନୀ, ତେଲୁଗୁ ଓ ସଂସ୍କୃତ ଭାଷାର ବ୍ୟାକରଣ ଏବଂ ସଂସ୍କୃତ, ବଙ୍ଗଳା, ମାରାଠୀ ଭାଷା-ମାନଙ୍କର ବିରାଟ ଅଭିଧାନ ସବୁ ସେ ପ୍ରକାଶ କରିଥିଲେ । ତିନି ବୃହତ୍ ଖଣ୍ଡରେ ରାମାୟଣକୁ ମଧ୍ୟ ଇଂରାଜୀରେ ଅନୁବାଦ କରି ପ୍ରକାଶ କରିଥିଲେ । ନୀଳକୋଠିର କାମ ବ୍ୟତୀତ ଏତେ ଦିଗରେ ଏ ପ୍ରକାର ସିଦ୍ଧି-ଲାଭ କରିବାକୁ ତାଙ୍କୁ କେତେ ଦୂର କଠୋର ଅଧ୍ୟବସାୟ କରିବାକୁ ହୋଇଥିବ, ତାହା ସହଜରେ ଅନୁମେୟ । ସେ କାଳରେ ବିଦ୍ୟୁତାଲୋକ ନ ଥିଲା, କି

ସାଧାରଣ କଟେସ୍ତା ପଙ୍ଖା ମଧ୍ୟ ନ ଥିଲା । ଏବସରେ ଭାରତର ଅସହ୍ୟ ଗ୍ରୀଷ୍ମରେ ଏବଂ ରାତିରେ ସୋରିଷ ତେଲର ଦୀପ ଜାଳି କେରୀ ଯାହା କରିପାଇଛନ୍ତି, ତାହା ସ୍ମରଣ କଲେ ତାଙ୍କୁ ଧନ୍ୟ ଧନ୍ୟ ନ କରି ରହି ହୁଏ ନାହିଁ ।

ନୀଳ କୋଠିରେ ମ୍ୟାନେଜର ଭାବରେ କିଛିକାଳ କଟେଇଲା ପରେ କେରୀ ଦିନାମାର ଗଭର୍ଣ୍ଣରଙ୍କ ନିମନ୍ତ୍ରଣ ପାଇ ପୁଣି ସେ ଶ୍ରୀରାମପୁରକୁ ଫେରି ଆସିଥିଲେ ଏବଂ ସେହିଠାରେ ହିଁ ଶେଷ ଜୀବନ କଟାଇଥିଲେ । ଏହି ଶ୍ରୀରାମପୁରରେ ହିଁ ଭାରତର ପ୍ରଥମ କାଗଜ-କଳ ସ୍ଥାପିତ ହୋଇଥିଲା । ଏହି ଶ୍ରୀରାମପୁରରେ ହିଁ କେରୀ ଭାରତର ପ୍ରଥମ ଛାପାଖାନା ବସାଇ ତାହାର ସାହାଯ୍ୟରେ ଚାଳିଶଟି ପ୍ରାଚ୍ୟ ଭାଷାରେ ବାଇବେଲ୍‌ର ପ୍ରକାଶ ଓ ପ୍ରଚାର ସଙ୍ଗେ ସଙ୍ଗେ ଭାରତୀୟ ଭାଷାମାନଙ୍କର ପ୍ରଥମ ପୁସ୍ତକ, ପତ୍ରିକା, ଅଭିଧାନ ଓ ବ୍ୟାକରଣ ସବୁ ପ୍ରକାଶ କରିଥିଲେ । ଆମ୍ଭେମାନେ ଆଜି, ଯେ ମୁଦ୍ରାଯନ୍ତ୍ରର ଉପକାର ପାଉଛୁ; ସେଥିଲାଗି ଭାରତରେ ମୁଦ୍ରାଯନ୍ତ୍ରର ପ୍ରଥମ ପ୍ରତିଷ୍ଠାତା କେରୀଙ୍କୁ ଧନ୍ୟବାଦ । କେରୀ ଆମ୍ଭମାନଙ୍କର ଆହୁରି ଗଭୀର କୃତଜ୍ଞତାଭାଜନ, ଏହି ଯୋଗୁଁ ଯେ, ସେ ତାଙ୍କ ମୁଦ୍ରାଯନ୍ତ୍ରରୁ 'ସମାଚାର ଦର୍ପଣ' ନାମକ ପ୍ରଥମ ଭାରତୀୟ ଖବରକାଗଜ ପ୍ରକାଶ କରି, ଭାରତୀୟ ଭାଷାରେ ଖବରକାଗଜ ଯେ ଲାଭଜନକ ବ୍ୟବସାୟ ଓ ଲୋକଶିକ୍ଷାର ଯନ୍ତ୍ରରୂପେ ପରିଚାଳିତ ହୋଇପାରିବ, ଏହା ଦେଖାଇ ଦେଲେ । ଏହି କେରୀଙ୍କ 'ସମାଚାର-ଦର୍ପଣ'ରେ ରାଜା ରାମମୋହନଙ୍କ ଆନ୍ଦୋଳନ ଫଳରେ ହିଁ ସତୀଦାହ ପ୍ରଥା ନିବାରିତ ହୋଇଥିଲା ।

କେରୀ ଭାରତରେ ୪୦ ବର୍ଷ କାମ କରି ୭୩ବର୍ଷ ବୟସରେ ପ୍ରାଣତ୍ୟାଗ କରିଥିଲେ । ମୃତ୍ୟୁ ପୂର୍ବରୁ ଦସ ୧୫ ବର୍ଷ ପାଏଁ

ଫୋର୍ଟ ଉଇଲିୟମ୍ ଦୁର୍ଗରେ ସଂସ୍କୃତ ଅଧ୍ୟାପକ ଏବଂ ବଙ୍ଗଳା ସରକାରଙ୍କର ବଙ୍ଗଳା ଅନୁବାଦକ ହୋଇଥିଲେ । କେରି ଭାରତବର୍ଷକୁ ସହାୟ-ସମ୍ବଳହୀନ ଭାବରେ ଆସି ଜୀବିକା ଲାଗି କଲିକତାରେ ମୋଟରଗିରି କରିବାପାଇଁ ଗୋଟିଏ ଛାପା ନୋଟିସ ବାଣ୍ଟିଥିଲେ । ମାଲଦାରେ ନୀଳକୋଠିର ମ୍ୟାନେଜର ନ ହୋଇଥିଲେ, କେରି କଲିକତାରେ ମୋଟ କାମ ଆରମ୍ଭ କରିଥାନ୍ତେ । କିନ୍ତୁ ସେହି ଦୁଃସ୍ଥକାଳର ସ୍ମାରକ ସ୍ୱରୂପ କେରି ସେହି ନୋଟିସରୁ ଖଣ୍ଡିଏ ବନ୍ଧାଇ ନିଜଘରେ ଟଙ୍ଗାଇ ରଖିଥିଲେ । ଯେଉଁ ଲୋକ କଲିକତାରେ ମୋଟ କାମ କରିବାକୁ ଯାଉଥିଲା, ସେ ଶେଷରେ ୨୭ ଟି ଭାଷା ଆୟତ୍ତ କରି, ଭାରତରେ ପ୍ରଥମ ମୁଦ୍ରାଯନ୍ତ୍ର, ପ୍ରଥମ ଛାପା ବହି, ପ୍ରଥମ ଭାରତୀୟ ଖବରକାଗଜର ଜନକ ହୋଇ ପ୍ରାଣତ୍ୟାଗ କଲା । ଅଧ୍ୟବସାୟ ବଳରେ ମନୁଷ୍ୟ କ'ଣ ନ କରିପାରେ ?

## ପ୍ରଶ୍ନ

୧ । "କେରିଙ୍କ ଜୀବନୀର ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ଦୃଢ଼ ଈଶ୍ୱରବିଶ୍ୱାସ ତାଙ୍କର ସର୍ବବିଧ ଉନ୍ନତିର ମୂଳ"— ଏହି ଉକ୍ତିକୁ ସମର୍ଥନ କରିବା ଭଳି କି କି ଉପାଦାନ ଏହି ପ୍ରବନ୍ଧରେ ନିହିତ ହୋଇଛି ?

୨ । ମୁଦ୍ରାଯନ୍ତ୍ରର ଉଦ୍ଭାବକଙ୍କ ନାମ ଓ ଜନ୍ମସ୍ଥାନ ଲେଖ । ଆମର ଓଡ଼ିଶାରେ ପ୍ରଥମେ କିଏ କେବେ ମୁଦ୍ରାଯନ୍ତ୍ର ସ୍ଥାପିତ କରିଥିଲେ ?

୩ । ନୀଳକୋଠି, ଫୋର୍ଟ ଉଇଲିୟମ୍, ଦାନାମାର—ଏମାନଙ୍କ ବିଷୟରେ ଯାହା ଜାଣ ଲେଖ ।

# ଅଧ୍ୟୟନ ଓ ଜ୍ଞାନ

ଜ୍ଞାନହିଁ ମନୁଷ୍ୟର ଶ୍ରେଷ୍ଠ ଶକ୍ତି । ଗୋଟିଏ ଦୃଷ୍ଟାନ୍ତରୁ ତାହା ସହଜରେ ବୁଝା ପଡ଼ିବ । ପୂର୍ବେ ଭାରତ ବର୍ଷରେ ନୀଳଚାଷ ହେଉଥିଲା । ନୀଳ ଗୋଟିଏ ଉଦ୍ଭିଦରୁ ଜାତ; ଏହି ଉଦ୍ଭିଦଟି କେବଳ ଭାରତବର୍ଷରେ ଜନ୍ମେ । ତେଣୁ ନୀଳ-ବ୍ୟବସାୟ ଭାରତବର୍ଷର ଏକଚାଟିଆ ଥିଲା ଏବଂ ଜଗତର ଚାହିଦାକୁ ସେଥିପାଇଁ ଭାରତବର୍ଷକୁ ଟଙ୍କା ଆସୁଥିଲା । ଜର୍ମାନୀର ଦଳେ ବୈଜ୍ଞାନିକ କୃତ୍ରିମ ଉପାୟରେ ନୀଳର ଉଦ୍ଭାବନ କରିବାକୁ ବସିଲେ । ଦୀର୍ଘ ୨୦ ବର୍ଷର ଅବିଶ୍ରାନ୍ତ ଅଧ୍ୟବସାୟର ଫଳ-ସ୍ୱରୂପ ଜର୍ମାନୀ କୃତ୍ରିମ ନୀଳ ଉଦ୍ଭାବନ କଲା । ଏହି ନୀଳ ଭାରତର ଉଦ୍ଭିଦ ନୀଳ; ତଥାପି ଏହାର ମୂଲ୍ୟ ଅପେକ୍ଷାକୃତ ଅଳ୍ପ । ଫଳରେ କେତେଟା ବର୍ଷ ଭିତରେ ଭାରତର ଏକଚାଟିଆ ନୀଳ-ବ୍ୟବସାୟ ଭାଙ୍ଗି ପଡ଼ିଲା ଓ ଭାରତକୁ ଆସୁଥିବା ଅର୍ଥ ଜର୍ମାନୀକୁ ଗଲା । କେତୋଟି ଜର୍ମାନୀ ବୈଜ୍ଞାନିକଙ୍କର ଜ୍ଞାନ ଭାରତବର୍ଷର ଦୈବଦତ୍ତ ସମ୍ପଦକୁ ବ୍ୟର୍ଥ କରିଦେଲା । ଏହିପରି ଜଣେ ଜାପାନୀ ଧୀବର କୃତ୍ରିମ ମୁକ୍ତା ସୃଷ୍ଟି କରି ଏବେ କୋଟିପତି ହୋଇଅଛି । ଏହି କୃତ୍ରିମ ମୁକ୍ତା ସ୍ୱାଭାବିକ ମୁକ୍ତାଠାରୁ କୌଣସି ଅଂଶରେ ହୀନ ନୁହେଁ । କିନ୍ତୁ ଏହି ମୁକ୍ତା ସୃଷ୍ଟି କରେଇବା ପାଇଁ ଶମ୍ବୁକପାଳନ ସମ୍ବନ୍ଧରେ ଯେଉଁ ଗଭୀର ଜ୍ଞାନ ଦରକାର, ତାହା ସେହି ଜାପାନୀ ଧୀବରର ଥିଲା ଏବଂ ତାହାର ଫଳରେ ସେ ଲକ୍ଷ ଲକ୍ଷ ଟଙ୍କାର ମାଲିକ ହେଲା ।

ଏ ପ୍ରକାର ଜ୍ଞାନ ଅଧ୍ୟୟନରୁ ହିଁ ଆସିଥାଏ । ଅବଶ୍ୟ, ଏ ଦେଶରେ ଏବେ ବହୁ ବିଦ୍ୟାଳୟ ସ୍ଥାପିତ ହେଲାଣି ଏବଂ ସେ ସବୁରେ

ସହସ୍ର ସହସ୍ର ଛାତ୍ର ଅଧ୍ୟୟନ କରୁଛନ୍ତି । କିନ୍ତୁ ସେ ଅଧ୍ୟୟନରୁ କ୍ୱଚିତ୍ ଜ୍ଞାନ ଲାଭ ହୋଇଥାଏ । ସେ ଅଧ୍ୟୟନ କେବଳ ପାସ୍ ପାଇଁ । ପ୍ରକୃତ ଜ୍ଞାନଲାଭ ହେଉଥିଲେ, ଆମ ଦେଶର ପିଲାମାନେ ବହୁ ବର୍ଷ ବିଦ୍ୟା ସାଧି ଓ ସେଥିଲାଗି ବହୁ ଅର୍ଥ ବ୍ୟୟ କରି ଶେଷରେ ପରଦ୍ୱାରରେ ଗୃହକର୍ମ ପାଇଁ ଏଠିକି ସେଠିକି ଦୌଡ଼ନ୍ତେ ନାହିଁ । ତେଣୁ ଆମକୁ ବୁଝିବାକୁ ହେବ ଯେ ପ୍ରକୃତ ଜ୍ଞାନପାଇଁ ଭିନ୍ନ ପ୍ରକାର ଅଧ୍ୟୟନ ଦରକାର ।

କଥାରେ ଅଛି, "ବାଳାନାମଧ୍ୟୟନଂ ତପଃ"; ଅର୍ଥାତ୍ ବାଳକମାନଙ୍କ ଅଧ୍ୟୟନ ହିଁ ଏକମାତ୍ର ତପସ୍ୟା । ପ୍ରକୃତରେ ଅଧ୍ୟୟନକୁ ତପସ୍ୟା ରୂପେ ଗ୍ରହଣ ନ କଲେ ସେଥିରୁ କୌଣସି ଲାଭ ହେବ ନାହିଁ । ତପସ୍ୟା ଗଭୀର ଅଭିନିବେଶ ଓ ଅନବଚ୍ଛିନ୍ନ ଅଧ୍ୟବସାୟ ଦରକାର କରେ । ଗଭୀର ଅଭିନିବେଶ ଓ ଅଧ୍ୟବସାୟ ସହିତ ଅଧ୍ୟୟନ କଲେ, ତପସ୍ୟାରୁ ସିଦ୍ଧି ଲାଭ ହେଲା ପରି ଜ୍ଞାନ ଲାଭ ସୁନିଶ୍ଚିତ । ଏହି ପୁସ୍ତକରେ ଅନ୍ୟତ୍ର ମୋଟ ଉଇଲିୟମ୍ କେରୀଙ୍କ ଜୀବନ ଦିଆଯାଇଅଛି । ଜ୍ଞାନହରଣ କିପରି ତପସ୍ୟା ହୋଇପାରେ, ତାଙ୍କର ଜୀବନୀ ପାଠକଲେ ଏ କଥା ସହଜେ ଜଣା ପଡ଼ିବ ।

ଅଧ୍ୟୟନର ଅର୍ଥ ଏହା ନୁହେଁ ଯେ, ବେଳରେ ଅବେଳରେ ସବୁବେଳେ ବହିରେ ମୁହଁ ଲଗେଇ ବସିଥିବ । ଗଭୀର ମନୋଯୋଗ ଦେଇ ଦିନକୁ ଦୁଇଘଣ୍ଟା ପଢ଼ିଲେ ଜଣେ ଲୋକ ବିଖ୍ୟାତ ପଣ୍ଡିତ ହୋଇ ପାରେ । ଅଙ୍ଗଚାଳନା ନ କରି କେବଳ ବହି ମୁଖସ୍ଥ କଲେ ଦେହ ବ୍ୟାଧିଗ୍ରସ୍ତ ହୋଇ ପଡ଼ିବ । ଯାହାର ଦେହ ବ୍ୟାଧି ମନ୍ଦିର, ତାଙ୍କ ପାଣ୍ଡିତ୍ୟ କି ଲାଭକୁ ଆସିବ ? ଯେଉଁ

ଜ୍ଞାନକୁ ମନୁଷ୍ୟ ନିଜର ବା ପରର ଉପକାରରେ ନ ଲଗାଇ ପାରେ, ସେ ଜ୍ଞାନ ନିରର୍ଥକ ଓ ହେୟ ।

ଇଂଲଣ୍ଡରେ ପ୍ରତ୍ୟେକ ସଙ୍ଗତିସମ୍ପନ୍ନ ବ୍ୟକ୍ତିଙ୍କ ଗୃହରେ 'ଷ୍ଟଡ଼ି ରୁମ' ବା 'ପାଠ-କକ୍ଷ' ବୋଲି ଏକ ସ୍ୱତନ୍ତ୍ର କକ୍ଷ ଥାଏ । ସେ ଗୃହରେ ପରିବାରର ସଂଗୃହୀତ ଛୋଟ ବଡ଼ ଲାଇବ୍ରେରୀ ଥାଏ ଏବଂ ପାଠରେ ମନ ଲାଗିବା ପାଇଁ ଯେଉଁ ସବୁ ସ୍ୱାଚ୍ଛନ୍ଦ୍ୟ ଦରକାର, ତାହା ଥାଏ । ଏ ଘରକୁ ପଢ଼ିଲା ଲୋକ ବ୍ୟତୀତ ଅନ୍ୟ କେହି ଯାଇ ଗୋଳମାଳ କରିପାରିବେ ନାହିଁ । ଏପରି କି, ଗୃହସ୍ୱାମୀ ପଠନରତ ଥିଲେ, ତାଙ୍କର ପତ୍ନୀ ମଧ୍ଯ କବାଟରେ ଆଘାତ କରି ପ୍ରଥମେ ତାହାରୁ ପଚାରିବେ, "ମୁଁ ଯାଇ ପାରିବି କି ?" ଏବଂ ସ୍ୱାମୀ ଅନୁମତି ଦେଲେ ଯାଇ ସେ ପାଠକକ୍ଷ ଭିତରକୁ ପ୍ରବେଶ କରିବେ । ପଠନ ଯେ ଏକ ପ୍ରକାର ତପସ୍ୟା ଏବଂ ସେଥିରେ ବିଘ୍ନ ଘଟାଇବା ଯେ ଏକ ଗୁରୁ ଅପରାଧ, ତାହା ଶ୍ୱେତାଙ୍ଗମାନେ ଉତ୍ତମରୂପେ ବୁଝିଛନ୍ତି । ଫଳରେ ସେମାନେ ସର୍ବଜ୍ଞାନର ଅଧିକାରୀ ହୋଇ ବର୍ତ୍ତମାନ ସମଗ୍ର ପୃଥିବୀ ଓ ଜଳ, ସ୍ଥଳ, ଆକାଶ, ସର୍ବତ୍ର ରାଜତ୍ୱ କରୁଅଛନ୍ତି । ଆମ୍ଭେମାନେ ସରସ୍ୱତୀଙ୍କ ପ୍ରତିମା ପୂଜା କରୁଁ । କିନ୍ତୁ ଆମ ପୂଜା କେବଳ ଭୋଜିରେ ସମାପ୍ତ ହୁଏ । ସରସ୍ୱତୀଙ୍କ ପ୍ରକୃତ ପୂଜା ଯେ ଜ୍ଞାନାହରଣ, ସେ କଥା ଆମେ ସରସ୍ୱତୀ-ପୂଜା ଦିନ ମଧ୍ୟ ମନରେ ପକାଉଁ ନାହିଁ । ଆମ୍ଭମାନଙ୍କ ଘରେ ଅଧ୍ୟୟନ ପାଇଁ ସ୍ୱତନ୍ତ୍ର ବନ୍ଦୋବସ୍ତ ନ ଥାଏ । ଗୋଟିଏ କକ୍ଷର ଗୋଟିଏ କୋଣରେ ପିଲା ପାଠାଭ୍ୟାସ କରୁଛି ତ, ଅନ୍ୟ କୋଣରେ ତା'ର ପିତା ମହାଜନୀଖାତା ମେଲାଇ ଖାତକମାନଙ୍କ ସଙ୍ଗେ ଗଣ୍ଡଗୋଳ ଚଲାଇଛି; ଦଳେ ଅକାମିକା ଦେଖଣାହାରି

ଜମା ହୋଇଛନ୍ତି, ସର୍ବୋପରି ଘରର ବାଳଗୋପାଳଗୁଡ଼ିକ ଢିଲ-ହାରିଦ୍ରା-ଜର୍ଜରି, ଲାଳାପିଚ୍ଛିଳ-ମୁଖ-ବକ୍ଷ ହୋଇ ଭାଇର ସ୍କୁଲ, କଲମ, ପେନ୍‌ସିଲ୍, ଛବିବହି ପାଇଁ ଦୌଡ଼ା ଦୌଡ଼ି, ଆକ୍ରମଣ ଓ ନ ପାଇଲେ ବିକଟ କ୍ରନ୍ଦନ ଓ ଭୂତଳରେ ଗଡ଼ାଗଡ଼ି କରୁଛନ୍ତି ଏବଂ ତାହା ଶାନ୍ତ କରିବା ପାଇଁ ପିତୃଦେବଙ୍କର ବେଳେ ବେଳେ "ଆରେ ଦେ ଦେ, ପିଲାଟା ଟିକିଏ ତୋ ବହିଟା ଧରୁ"—ଏହି ପ୍ରକାର ଆଦେଶ ଦେଉଛନ୍ତି । ଏ ହଟ୍ଟଗୋଳ ଭିତରେ ସରସ୍ୱତୀଙ୍କ ସାଧ କାହିଁ ରହିବାକୁ ?

ପୂର୍ବେ ଆମ୍ଭମାନଙ୍କ ଦେଶରେ ଅଧ୍ୟୟନ ପ୍ରଥମ ତପସ୍ୟା-ରୂପେ ନିର୍ଦ୍ଧାରିତ ହୋଇଥିଲା; ତେଣୁ ବାଳକମାନଙ୍କୁ କିଶୋର ବୟସରୁ ନଗରର କୋଳାହଳ ଓ ପାପସ୍ପର୍ଶରୁ ଦୂରରେ ରଖିବା ପାଇଁ ସେମାନଙ୍କୁ ଗୁରୁଗୃହରେ ରଖା ହେଉଥିଲା ଏବଂ ସେଠାରେ ବ୍ରହ୍ମଚର୍ଯ୍ୟ-ବ୍ରତ-ପାଳନ ଓ ଶାସ୍ତ୍ରାଧ୍ୟୟନ କରି ପଚିଶ ବର୍ଷ ବୟସରେ ସେମାନେ ଘରକୁ ଫେରି ଗୃହସ୍ଥ ହେଉଥିଲେ । ବ୍ରହ୍ମଚର୍ଯ୍ୟବ୍ରତ ଅଧ୍ୟୟନ-ତପସ୍ୟା ପାଇଁ ଅତ୍ୟନ୍ତ ଦରକାର; କାରଣ ବ୍ରହ୍ମଚର୍ଯ୍ୟ ଫଳରେ ମାନସିକଶକ୍ତି ସତେଜ ରହେ ଏବଂ ବୁଦ୍ଧି ଓ ଧାରଣାଶକ୍ତି ପ୍ରଖର ହୁଏ ।

ବର୍ତ୍ତମାନ ଅନେକ ପ୍ରକାର ପୁସ୍ତକ ପ୍ରକାଶିତ ହେଉଛି । ଯାହା ହାତକୁ ଆସିଲା ତାହା ପଢ଼ିଦେଇ ଗଲେ ଯେ ଜ୍ଞାନ ହୋଇଯିବ, ତାହା ଏକାନ୍ତ ଭ୍ରମ । ଏ ବିଷୟରେ ଅଭିଜ୍ଞ ଗୁରୁଜନ ବା ଶିକ୍ଷକଙ୍କ ମତ ବୁଝି ସୁପାଠ୍ୟ ପୁସ୍ତକମାନଙ୍କର ଏକ ତାଲିକା କରି ରଖିବା ଉଚିତ । ସୁଯୋଗ ଦେଖି ସେହି ପୁସ୍ତକଗୁଡ଼ିକ କ୍ରମେ

କମେ ପଢ଼ି ନେବ । ପଢ଼ିଲାବେଳେ ଭଲ ଭଲ ଭାବ, ଚିନ୍ତା ବା ପଂକ୍ତିଗୁଡ଼ିକ ନୋଟ୍ ଖାତାରେ ଟିପି ରଖିବା ନିତାନ୍ତ ଆବଶ୍ୟକ । କାରଣ ଯାହା ପଢ଼ିଲ, ତାହା ଯେ ସବୁବେଳେ ମସ୍ତିଷ୍କରେ ରହିବ ତାହାର କି ସ୍ଥିରତା ଅଛି ? ଥରେ ପଢ଼ି ତାହା ପରେ ପାଶୋରି ଦେଲେ ଲାଭ କ'ଣ ହେବ ?

ଆମ ଦେଶରେ ସାଧାରଣତଃ ପୁସ୍ତକ କିଣିବାର ଅଭ୍ୟାସ ଲୋକଙ୍କର ନାହିଁ । ଲୋକେ ପାନ, ବିଡ଼ି, ଅଫିମ ପ୍ରଭୃତି ଜଘନ୍ୟ ବ୍ୟସନ ଓ ବସ୍ତ୍ରାଦି ବିଳାସରେ ବହୁତ ଖର୍ଚ୍ଚ କରିବାକୁ ପ୍ରସ୍ତୁତ; କିନ୍ତୁ ଖଣ୍ଡିଏ ବହି ପାଇଁ-କେତେ ଅଣା ପଇସା ଖର୍ଚ୍ଚ କରିବାକୁ କୁଣ୍ଠିତ । ପ୍ରତ୍ୟେକ ୟୁରୋପୀୟ ଗୃହରେ ଛୋଟ ବଡ଼ ଗୋଟିଏ ଲାଇବ୍ରେରୀ ଦେଖିବାକୁ ମିଳିବ । ଭାରତବର୍ଷର ଲୋକେ ମାଗି କରି ପଢ଼ିବାରେ ଅଭ୍ୟସ୍ତ । କିନ୍ତୁ ସାହେବମାନେ ଯେ କୌଣସି ଜିନିଷ ଅନ୍ୟକୁ ମାଗିବାଟାକୁ ଘୃଣା କରନ୍ତି । ସେମାନଙ୍କର ଏହି ସଦ୍‌ଗୁଣ ଆମ୍ଭେମାନେ ଅନୁକରଣ କରିବା ଉଚିତ । ସଦ୍‌ଗ୍ରନ୍ଥଠାରୁ ମୂଲ୍ୟବାନ୍ ଜିନିଷ ଆଉ କ'ଣ ଅଛି ? ସେଥିଲାଗି ଅର୍ଥବ୍ୟୟ କରିବାକୁ ଆଦୌ କୁଣ୍ଠିତ ହେବ ନାହିଁ ।

କେତେକ ବହି ମନ ଖୁସି ପାଇଁ ପଢ଼ାଯାଏ; କିନ୍ତୁ କେତେକ ଅତ୍ୟନ୍ତ ମନଯୋଗ ଦେଇ ପଢ଼ିବା ଉଚିତ । ବ୍ୟାକରଣ ପ୍ରଭୃତି କେତେକ ବହି ମୂଳଦୁଆର କାମ କରନ୍ତି । ମୂଳଦୁଆ କଞ୍ଚା ରହିଲେ ଉପରର ଜ୍ଞାନସୌଧରେ ବରାବର ଦୋଷ ରହିବ । ତେଣୁ କଷ୍ଟ ହେଉ ପଛେ ମୂଳଦୁଆ ସୁଦୃଢ଼ କରି ରଖିବା ଉଚିତ ।

ଗପ, ଘରକାନ୍ଧା, ତାସଖେଳ ପ୍ରଭୃତିରେ ସମୟ ନଷ୍ଟ ନ କରି କୌଣସି ନା କୌଣସି ବିଷୟରେ ଅଧ୍ୟୟନରତ ହେଲେ ତାହା ଜ୍ଞାନ ଓ ଗୌରବ ଉଭୟ ଆଣିଦେବ । ଯେଉଁମାନେ ଅକାରଣ ସମୟ ନଷ୍ଟ କରନ୍ତି, ସେମାନଙ୍କର ଖବର ଜଗତ ରଖେ ନାହିଁ । ତେଣୁ ନିଷ୍କର୍ମୀମାନେ ଆଦର୍ଶ ନ ହୋଇ ଯେଉଁମାନେ ସମୟର ସଦ୍‌ବ୍ୟବହାର କରି ଜଗତର ଉପକାର କରିଛନ୍ତି, ସେହିମାନେହିଁ ଆଦର୍ଶ ହେବା ଉଚିତ ।

## ପ୍ରଶ୍ନ

୧ । ପାଠପାଇଁ ପୁସ୍ତକ-ନିର୍ବାଚନରେ କି ପ୍ରକାର ରୀତି ଅବଲମ୍ବନୀୟ ? ଏହାର କାରଣ ନିର୍ଦ୍ଦେଶ-ପୂର୍ବକ ଲେଖ ।

୨ । ଅଧ୍ୟୟନକୁ ତପସ୍ୟା ବୋଲି କାହିଁକି କୁହାଯାଏ ?

୩ । ବ୍ୟତୀତ, ଅଭ୍ୟସ୍ତ, ଗୌରବ, ସରସ୍ୱତୀ—ଏହି ପଦମାନଙ୍କ ମଧ୍ୟରେ ବିଶେଷ୍ୟ ପଦକୁ ବିଶେଷଣରେ ଏବଂ ବିଶେଷଣ ପଦକୁ ବିଶେଷ୍ୟରେ ପରିଣତ କର ।

୪ । ଘିଲାପିଚ୍ଛିଳ-ମୁଖ-ବିଷ, ଦରିଦ୍ରା-ଜର୍ଜରି—ଏହି ପଦଦ୍ୱୟରେ ଥିବା ସମାସଗୁଡ଼ିକର ବିଗ୍ରହବାକ୍ୟ ଓ ନାମ ଲେଖ ।

---

## ଇଂଲଣ୍ଡର ପ୍ରାକୃତିକ ଦୃଶ୍ୟ

ଇଂରେଜମାନଙ୍କ ଜନ୍ମଭୂମି ଇଂଲଣ୍ଡ ଶୀତପ୍ରଧାନ ଦେଶ । ଏହା ଗୋଟିଏ ଦ୍ୱୀପ । ଅନେକ ଭାରତୀୟ ଏହାକୁ ଶ୍ୱେତଦ୍ୱୀପ

କହନ୍ତି । କାରଣ ଏହା ଶ୍ୱେତାଙ୍ଗ ଇଂରେଜ ଜାତିର ବାସସ୍ଥାନ । ଶୀତଋତୁରେ ତୁଷାରପାତ ହେଲେ ସମଗ୍ର ଦେଶ ପ୍ରକୃତିରେ ଶ୍ୱେତ-ରାଜ୍ୟରେ ପରିଣତ ହୁଏ । କିନ୍ତୁ ଅନ୍ୟ ଋତୁରେ ଏହି ଦ୍ୱୀପର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ଶ୍ୟାମଳ । ସେତେବେଳେ ଏହାକୁ ଶ୍ୱେତଦ୍ୱୀପ ନ କହି ଶ୍ୟାମ-ଦ୍ୱୀପ କହିବାକୁ ଇଚ୍ଛା ହେବ ।

ଆମ ଦେଶରେ ଛ'ଋତୁ । ଇଂଲଣ୍ଡରେ ଚାରୋଟି ଋତୁ । ଏହି ଋତୁମାନ ଆମ ଦେଶର ଋତୁମାନଙ୍କଠାରୁ ଭିନ୍ନ । ଇଂଲଣ୍ଡରେ ଆମ ଦେଶ ପରି ବର୍ଷାଋତୁ ବୋଲି କୌଣସି ଋତୁ ନାହିଁ । ସେଠାରେ ପ୍ରତି ମାସରେ ବର୍ଷା ହୁଏ । ବୃଷ୍ଟି ମଧ୍ୟ ଭାରତ-ବର୍ଷର ଧାରା-ଶ୍ରାବଣ ପରି କେବେହେଲେ ହୁଏ ନାହିଁ । ପ୍ରାୟ ସବୁବେଳେ ଝିପିରି ଝିପିରି ବର୍ଷା ହୁଏ । ଖରା, ବର୍ଷା, ଗ୍ରୀଷ୍ମ, ଶୀତ ପ୍ରଭୃତିର କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ । କୌଣସି ଦିନ ସକାଳୁ ଖୁବ୍ ଶୀତ ହେଉଛି ତ ଘଣ୍ଟାକ ପରେ ବେଶ୍ ଗରମ ହେଲା ଓ ସୂର୍ଯ୍ୟ ଦେଖାଗଲା, କିନ୍ତୁ ଅଳ୍ପ ସମୟ ପରେ ପୁଣି ହଠାତ୍ ବର୍ଷା ଓ ପ୍ରବଳ ପବନ ହେଲା; ତା ପରେ ପୁଣି ହୁଏତ ଭୟଙ୍କର ଥଣ୍ଡା ହେଲା । ଇଂରେଜ ଜାତି ଏ ପ୍ରକାର ପୃଥକ୍ ପାଗରେ ଅଭ୍ୟସ୍ତ ଥିବାରୁ ପୃଥିବୀର ସବୁ ପ୍ରକାର ପାଗକୁ ସହି ପାରନ୍ତି । ଶୀତପ୍ରଧାନ ଦେଶର ଲୋକ ହେଲେ ମଧ୍ୟ ଭାରତବର୍ଷର ପ୍ରଚଣ୍ଡ ଖରାରେ ସେମାନେ ଅକ୍ଳାନ୍ତ ଭାବରେ କାମ କରନ୍ତି ।

ଆମ ଦେଶରେ ଶୀତ ତିନି ମାସ ମାତ୍ର ରହେ । ଇଂଲଣ୍ଡରେ ପ୍ରାୟ ଛଅ ମାସ କାଳ ପ୍ରବଳ ଶୀତ ହୁଏ । ବାକି

ଛଅ ମାସ କମ୍ ଶୀତ ହୁଏ; କିନ୍ତୁ ତାହା ଆମ ଦେଶର ଶୀତ-କାଳର ଥଣ୍ଡାଠାରୁ ବେଶୀ । ଶିତ କାଳରେ ଉପର୍ଯ୍ୟୁପରି ପାଞ୍ଚ-ଛଅଟା ଜନ୍ତୁ ପରିଧେୟ ପରିଧାନ କଲେ ଇଂଲଣ୍ଡର ପ୍ରବଳ ହେମାଳରୁ କିଛିଏ ରକ୍ଷା ମିଳେ । ସେ ସମୟରେ ଇଂଲଣ୍ଡର ପ୍ରତି ଘର, ଅଫିସ, ଦୋକାନ ଅଥବା ଯେଉଁଠି ମନୁଷ୍ୟର ଚଳପ୍ରଚଳ ହେବାର କଥା, ସେଠି ଅହୋରାତ୍ର ଅଗ୍ନିର ବନ୍ଦୋବସ୍ତ ହୋଇଥାଏ । ପୂର୍ବେ ଇଂରେଜମାନେ କାଠ ଜାଳୁଥିଲେ, ଏବେ ପ୍ରାୟ କୋଇଲାହିଁ ଜାଳନ୍ତି । ଗ୍ୟାସ୍ ଓ ବିଦ୍ୟୁତର ଉତ୍ତାପକୁ ମଧ୍ୟ କ୍ରମେ କ୍ରମେ କାର୍ଯ୍ୟରେ ଲଗାଯାଉଛି । ରାତି କାଳରେ ଶୋଇବାକୁ ଗଲାବେଳେ ଅଧିକାଂଶ ଲୋକ ଗରମ ଜଳର ରବର୍-ବୋତଲ ଶେଯ ଭିତରେ ପୂରାଇ ଶୁଅନ୍ତି । ଶୀତ କାଳରେ ଅପରାହ୍ନ ଚାରିଟା ବେଳୁ ରାତ ହୋଇଯାଏ ଏବଂ ତାହା ପରଦିନ ସକାଳ ୮ଟା, ୯ଟା ପର୍ଯ୍ୟନ୍ତ ରହେ । ଏହି ଦୀର୍ଘ ଶୀତ ଶର୍ବରୀ କଟେଇବା ପାଇଁ ଇଂରେଜମାନେ ଶୀତ ଋତୁରେ ଦିନର କାମ ଶେଷ କରିଦେଇ ଅନେକ ରାତ ଯାଏ ନୃତ୍ୟ, ଗୀତ ଓ ପାନ-ଭୋଜନରେ ମତ୍ତ ହୋଇ ରାତିର ଶେଷ ପ୍ରହରରେ ନିଦ୍ରା ଯାଆନ୍ତି । ବୃଦ୍ଧ ଓ ବୃଦ୍ଧାମାନେ ନିଜ ନିଜ ଘରର ଅଗ୍ନିପୀଠ ପାଖେ ବସି ଛୋଟ ଛୋଟ ନାତି ନାତୁଣୀ ବା ପୁତ୍ରକନ୍ୟାମାନଙ୍କୁ ଗପ ଶୁଣାନ୍ତି । ବେଳେ ବେଳେ ଭୟଙ୍କର ତୁଷାରପାତ ହୁଏ । ରାସ୍ତାରେ ଚାଲି ଯାଉଥିଲାବେଳେ ପତଳା ବରଫ ଶୁଭ୍ର କାର୍ପାସ ପରି ଯାତ୍ରୀମାନଙ୍କର ପରିଚ୍ଛଦରେ ଜମାହୋଇଥାଏ । ବେଳେବେଳେ ଏହି ତୁଷାରପାତ ବହୁଦିନ ଯାଏ ଚାଲେ । ରାସ୍ତା, ଘରର ଛାତ, ଗଛ, ବିଲ, ବଣ ଓ ପ୍ରାନ୍ତର ସର୍ବତ୍ର ବହୁତ ବହଳିଆ ରଜତଶୁଭ୍ର ବରଫ ଜମା ହୋଇ ଥିବାରୁ ସମଗ୍ର ପୃଥିବୀ ଶୁକ୍ଳ ବସନରେ ଆବୃତ ହେଲା ପରି ପ୍ରତୀତ ହୁଏ ।

ଶୀତ ଋତୁର ଜଡ଼ତା ପରେ ମାର୍ଚ୍ଚମାସ ଆଡ଼କୁ ବସନ୍ତ ଆସି ଜଡ଼ ପୃଥିବୀରେ ଜୀବନସଞ୍ଚାର କରେ । ଶୀତକାଳରେ ଇଂଲଣ୍ଡରେ ବୃକ୍ଷଲତା ସବୁ ପତ୍ରଶୂନ୍ୟ ହୋଇ ରହିଥାନ୍ତି । ବସନ୍ତ ଆସି ଶୀତର ପ୍ରକୋପ କମାଇ ଦେଲେ ବୃକ୍ଷଲତାରେ ନୂତନ ପତ୍ର ଓ ପୁଷ୍ପର ଉଦ୍‌ଗମ ହୁଏ । ଭୂମିତଳରୁ ନୂତନ ଘାସ ଓ ନାନା ବର୍ଣ୍ଣର ଛୋଟ ପୁଷ୍ପ ମୁଣ୍ଡଟେକି ଉଠନ୍ତି । ଆପଲ୍ ଗଛମାନଙ୍କରେ ପୁଷ୍ପୋଦ୍‌ଗମ ହେଲେ ତାର ସୁଷମା ଓ ସୁଗନ୍ଧ ଆମ ଦେଶର ଆମ୍ବ ବଉଳ ପରି ଆମୋଦଦାୟକ ହୋଇଥାଏ । ଶୀତକାଳର ଆଳସ୍ୟ ପରେ ଇଂରେଜ କୃଷକ ତୁଷାରାର୍ଦ୍ର କୃଷିକ୍ଷେତ୍ରକୁ କର୍ଷଣ କରି ସେଥିରେ ବୀଜବପନ କରିବାକୁ ବାହାରେ ।

ଆମ ଦେଶର ଗ୍ରୀଷ୍ମ ଅତ୍ୟନ୍ତ ଅସହ୍ୟ । କିନ୍ତୁ ଇଂଲଣ୍ଡରେ ଗ୍ରୀଷ୍ମକାଳହିଁ ମନୋହରତମ ଋତୁ । ବସନ୍ତର ଆରମ୍ଭରେ ବୃକ୍ଷ-ଲତାରେ ଯେଉଁ ପତ୍ର-ପୁଷ୍ପ ଉଦ୍‌ଗତ ହୋଇଥାଏ, ଗ୍ରୀଷ୍ମକାଳରେ ତାହା ପୂର୍ଣ୍ଣତାପ୍ରାପ୍ତ ହୁଏ । ତଳେ ଗାଢ଼ ସବୁଜ ବର୍ଣ୍ଣର ଘାସ ଶ୍ୟାମଳ ଗାଲିଚା ପରି ବିଛେଇ ହୋଇଯାଏ; ଉପରେ ନୂତନ ସବୁଜ ପତ୍ରରେ ଭରି ବୃକ୍ଷରାଜି ଏବଂ ଘାସରେ, ବୁଦାରେ, ଗଛରେ, ଲତାରେ ନାନାବର୍ଣ୍ଣର ସୁନ୍ଦର ପୁଷ୍ପରାଶି; ବୃକ୍ଷଶାଖାମାନଙ୍କରେ ନାନାପ୍ରକାର ପକ୍ଷିକୁଳର କୂଜନଦ୍ୱାରା ସମଗ୍ର ଇଂଲଣ୍ଡ ଗୋଟିଏ ପ୍ରକାଣ୍ଡ ବସନ୍ତୋଦ୍ୟାନରେ ପରିଣତ ହୁଏ । ବର୍ଷର ଅଧିକାଂଶ ଦିନ ସୂର୍ଯ୍ୟଦେବଙ୍କର ସ୍ପଷ୍ଟ ଦର୍ଶନ ମିଳେ ନାହିଁ । ଏହି ଗ୍ରୀଷ୍ମକାଳରେ ଉଜ୍ଜ୍ୱଳ ସୂର୍ଯ୍ୟକିରଣ ପାଇ ଇଂରେଜ ନରନାରୀ-ମାନେ ଶୀତଦିନର ଉଷ୍ମ ପରିଧେୟମାନ ଫିଙ୍ଗିଦେଇ ଓ ଶୀତଳ ପୋଷାକ ପିନ୍ଧି ସହସ୍ର ସହସ୍ର ସଂଖ୍ୟାରେ ସମୁଦ୍ରକୂଳରେ ବା ମୁକ୍ତ

ପ୍ରାନ୍ତରରେ ଶୋଇ, ଖେଳ ବା ବୁଲାବୁଲି କରି ରୌଦ୍ର ସେବନ କରନ୍ତି । ଅବଶ୍ୟ ଇଂଲଣ୍ଡର ଗ୍ରୀଷ୍ମକାଳୀନ ସୂର୍ଯ୍ୟକିରଣ ଆମ ଦେଶର ଶୀତକାଳର ସୂର୍ଯ୍ୟକିରଣ ପରି ଅତ୍ୟନ୍ତ ସୁଖକର । ଏହି ସମୟର ଦିନଗୁଡ଼ି ଶୀତକାଳର ଦିନଗୁଡ଼ିର ଠିକ୍ ବିପରୀତ ହୁଏ । ଅନେକ ସମୟରେ ଏପରି ଘଟେ ଯେ, ଲୋକେ ଦିନ ଥାଉଁ ଥାଉଁ ରାତି ଶୟନକୁ ଯାଇ ପୁଣି ଦିନରେ ଉଠନ୍ତି । ବର୍ତ୍ତମାନ ଆଉ ଅଗ୍ନିର ବେଶି ପ୍ରୟୋଜନ ହୁଏ ନାହିଁ । ସମଗ୍ର ଇଂଲଣ୍ଡରେ ଗ୍ରୀଷ୍ମକାଳର ସୁଖଭୋଗ କରିବା ଲାଗି ସ୍କୁଲ, କଲେଜ, କଚେରୀ ଆଦି ବନ୍ଦ ହୋଇଯାଏ । ପଲ୍ଲୀ ଗହଳରେ କୃଷକମାନେ ଶସ୍ୟର କର୍ତ୍ତନ ଓ ସଂଗ୍ରହରେ ବ୍ୟସ୍ତ ରହନ୍ତି । ବର୍ଷଯାକର ଖାଦ୍ୟ ଇଂରେଜ କୃଷକ ଏହି ଗ୍ରୀଷ୍ମକାଳରେ ସଂଗ୍ରହ କରି ରଖେ ।

ଜୁନ୍, ଜୁଲାଇ, ଅଗଷ୍ଟ ଏହି ତିନି-ମାସ ଗ୍ରୀଷ୍ମକାଳ । ତା ପରେ ପୁଣି ଶୀତ ଆରମ୍ଭ ହୋଇଥାଏ । ଅଗଷ୍ଟ ମାସର ଶେଷାର୍ଦ୍ଧରୁ ହେମନ୍ତଋତୁର ଆରମ୍ଭ ହୁଏ । ଗଛର ପତ୍ର ସବୁ ଝଡ଼ିବାକୁ ଆରମ୍ଭ କରେ । ଲୋକମାନେ ଛୁଟି ଶେଷରେ କର୍ମକ୍ଷେତ୍ରକୁ ଫେରିଲାବେଳେ ଭାବନ୍ତି ଯେ, ଶୀତ ପୁଣି ନିକଟ ହୋଇ ଆସିଲା ଏବଂ ଉଷ୍ମବସ୍ତ୍ରର ଆୟୋଜନ କରିବା ଦରକାର । କୃଷକମାନେ ନିଜପାଇଁ ଓ ଗୃହପାଳିତ ଗବାଦି ପଶୁମାନଙ୍କ ପାଇଁ ଶୀତକାଳୀନ ଖାଦ୍ୟର ବ୍ୟବସ୍ଥା କରିନଅନ୍ତି ।

## ପ୍ରଶ୍ନ

୧ । "ଇଂଲଣ୍ଡର ପ୍ରକୃତି ସେହି ଦେଶବାସୀଙ୍କୁ କର୍ମଠ କରିଛି"
—ଏହି ଉକ୍ତିର ସମୀଚୀନତା ପ୍ରମାଣ କର ।

୨ । ଇଂଲଣ୍ଡରେ ଗ୍ରୀଷ୍ମକାଳୀନ ପ୍ରକୃତିର ବୈଶିଷ୍ଟ୍ୟ ବର୍ଣ୍ଣନ କର ।
୩ । ଦ୍ୱୀପ, ବହୁୀବ୍ରୀହି—ଏହାର ବ୍ୟୁତ୍ପତ୍ତି ଲେଖ ।
୪ । ଶୀତଶର୍ବରୀ, ଉଷ୍ଣପରଧେୟ, ତୁଷାରାଦ୍ରି—ଏ ପଦମାନଙ୍କର ସମାସ ନାମ ଓ ବିଗ୍ରହ ବାକ୍ୟ ଲେଖ ।

## ଭଦ୍ରଲୋକ ବା ଭଲ ଲୋକ

ଆମ୍ଭେମାନେ ଅନେକ ସମୟରେ ଶୁଣୁଁ, 'ସେ ଭାରି ଭଦ୍ରଲୋକ' ବା 'ଅମୁକ ବଡ଼ ଭଲ ଲୋକ ।' କେଉଁ କେଉଁ ଗୁଣ ବା ବିଶେଷତ୍ୱ ଥିଲେ ଜଣକୁ ଭଦ୍ରଲୋକ ବା ଭଲ ଲୋକ କହିବା ?

ସାଧାରଣତଃ ସଙ୍ଗତିସମ୍ପନ୍ନ ବା ହାକିମିଆ ଲୋକ ଭଦ୍ରଲୋକ ବୋଲାନ୍ତି । କୃଷୀ ବା ଶ୍ରମିକ ଶ୍ରେଣୀର ଲୋକଙ୍କୁ, ସେମାନେ ଯେତେ ଭଲ ଲୋକ ହେଲେ ମଧ୍ୟ, ଭଦ୍ରଲୋକ ବୋଲି ସମ୍ମାନ କରାଯାଏ ନାହିଁ । ଏହା ଲୋକଙ୍କର ଏକ କୁସଂସ୍କାର । ପ୍ରକୃତରେ ଭଲ ଲୋକଙ୍କୁ ହିଁ ଭଦ୍ରଲୋକ କହିବା ଉଚିତ୍ । ଯେଉଁ ହାକିମ ନିଜର ପଦ ଯୋଗୁଁ ଅହଙ୍କାରରେ ଅନ୍ୟମାନଙ୍କୁ ତୁଚ୍ଛ ବ୍ୟବହାର କରେ, ଯେଉଁ ଧନୀ ଲୋକ ଦୀନଦୁଃଖୀର ସାଶ୍ରୁକାତରୋକ୍ତି ପ୍ରତି ବଧିର, ଯେଉଁ ଶିକ୍ଷିତ ବ୍ୟକ୍ତି ଗ୍ରାମର ନିରକ୍ଷର ଚଷାମାନଙ୍କୁ ଦେଖି ହସେ, ତାଙ୍କୁ 'ଭଦ୍ରଲୋକ' ବୋଲି କହିଲେ ପଦଟିର ଅବମାନନା ହେବ । ଏପ୍ରକାର ଲୋକସବୁ ଅଭଦ୍ର—ଏମାନେ ସମାଜର ଘୃଣ୍ୟ କଳଙ୍କ ।

ଭଦ୍ରତାର ବହୁ ଲକ୍ଷଣ ଅଛି । କିନ୍ତୁ ପ୍ରଧାନ ଲକ୍ଷଣ ହେଉଅଛି ନିଃସ୍ୱାର୍ଥ-ଭାବ । ପ୍ରକୃତ ଭଦ୍ରଲୋକ ନିଜ କଥା ସବୁବେଳେ ପଛକୁ ରଖି ଅନ୍ୟମାନଙ୍କ କଥା ଆଗେ ଦେଖେ । ଆମ୍ଭେମାନେ ରେଳଗାଡ଼ିରେ ଗଲାବେଳେ ନିଜେ କିପରି ସୁଖରେ ବସିବୁଁ ବା ଶୋଇବୁଁ, ସେଇକଥା ସବୁବେଳେ ଦେଖୁଁ । କିନ୍ତୁ ପ୍ରକୃତ ଭଦ୍ରଲୋକ ଅନ୍ୟମାନଙ୍କର, ବିଶେଷତଃ ସ୍ତ୍ରୀଲୋକ, ବାଳକ ବାଳିକା ବା ଦୁର୍ବଳ ବ୍ୟକ୍ତିମାନଙ୍କର ବସିବା ବା ଶୋଇବାର ବନ୍ଦୋବସ୍ତ ନ କରି କେବେହେଁ ବସେ ନାହିଁ କି ଶୁଏ ନାହିଁ । ରେଳଗାଡ଼ିରେ ଯେପରି, ଘରେ, ବାହାରେ, ସବୁଠି ଭଦ୍ରଲୋକ ଅନ୍ୟର ଅସୁବିଧା ଆଦୌ ସହି ପାରିବ ନାହିଁ ଏବଂ ସବୁବେଳେ ଅନ୍ୟର ଉପକାରରେ କିପରି ଆସିବ, ଏହି କଥା ଭାବୁଥିବ । ଥରେ ଏକ ନୌ-ଯୁଦ୍ଧରେ ସର୍ ଆବର୍‌କ୍ରମ୍ବି ନାମକ ଜଣେକ ଇଂରେଜ ସେନାପତି ବିଶେଷ-ଭାବରେ ଆହତ ହେବାରୁ ତାଙ୍କୁ ଏକ ଜାହାଜକୁ ନେଇ ଆଗଲା ଏବଂ ଜଣେ ସୈନିକର କମ୍ବଳକୁ ଗୋଟିଏ ତାଙ୍କ ପିଠିତଳେ ଦେଇ ଆଉଜାଇ ଶୋଇଦେବାରୁ ତାଙ୍କୁ ଟିକିଏ ଭଲ ଲାଗିଲା । ସେନାପତି ସେତେବେଳକୁ ମରଣୋନ୍ମୁଖ । ତଥାପି ସେ ମୁଣ୍ଡ ଟେକି ପଚାରିଲେ, "ମୋ ପିଠିତଳେ କ'ଣ ଦିଆ-ହୋଇଛି କି ?" ଉତ୍ତର ହେଲା—ଗୋଟିଏ କମ୍ବଳ । ସେନାପତି ପଚାରିଲେ, "କାହାର କମ୍ବଳ ?" ଜଣେ ସୈନିକ ଉତ୍ତର ଦେଲା, "ଆମରମାନଙ୍କ ମଧ୍ୟରୁ ଜଣକର ।" ସେନାପତି ତାହାର ନାମ ପଚାରିଲେ । ଉତ୍ତର ମିଳିଲା ଯେ କମ୍ବଳଟି ଡନ୍‌କାନ୍ ନାମକ ସୈନିକର । ମୁମୂର୍ଷୁ ସେନାପତି କହିଲେ, "ଦେଖ, ରାତିରେ ଶୀତ ହେଉଛି । ରାତିକି ଡନ୍‌କାନ୍ ଯେପରି ତା କମ୍ବଳ ଫେରିପାଏ ।"

ଏହି ଘଟଣା, ଭଦ୍ରତା କ'ଣ, ତାହା ଚିହ୍ନାଇ ଦେଉଛି । ସେତେବେଳେ ମୁହୂର୍ତ୍ତରେ ମଧ୍ୟ ବୀର ସେନାପତି ଜଣେ ସାମାନ୍ୟ ସୈନିକର ଅସୁବିଧା କଥା ଭୁଲିଯାଇ ନ ଥିଲେ ।

ବେଳେବେଳେ ଜଣେ ଜଣେ ଲୋକ ଜଗତକୁ ଦେଖେଇ ହେବାପାଇଁ ହୁଏତ ସେନାପତି ଆବର କର୍ମିଙ୍କ ପରି କିଛି ନା କିଛି କରିପାରନ୍ତି । କିନ୍ତୁ ଭଦ୍ରତାର ପ୍ରକୃତ ପରୀକ୍ଷା ହେଉଛି ଦୈନନ୍ଦିନ ଜୀବନରେ । ଜଣେ ଲୋକ ତାର ଗୃହପରିବାରର, ପ୍ରତିବେଶୀ, ଭାଇବନ୍ଧୁମାନଙ୍କ ସଙ୍ଗେ—ବିଶେଷତଃ ତାଙ୍କ ସ୍ତରରୁ ନିମ୍ନରେ ଥିବା ଲୋକଙ୍କ ପ୍ରତି କି ପ୍ରକାର ବ୍ୟବହାର କରେ, ସେଇଥିରୁ ସେ ଲୋକ ଭଦ୍ର କି ଅଭଦ୍ର, ଜଣା ପଡ଼ିବ । ଯେଉଁ ଲୋକ ନିମ୍ନସ୍ତରର ଦରିଦ୍ରଙ୍କ ଦୁଃଖ ଅନୁଭବ କରି ସେମାନଙ୍କ ପ୍ରତି ସଦୟ ବ୍ୟବହାର କରେ, ପରର ଦୋଷ ଦେଖିଲାବେଳେ ଯେ ନିଜର ଦୋଷ ସବୁ ମନକୁ ଆଣେ, ଯେ ବୟସ୍କ ଲୋକଙ୍କ ନିକଟରେ ବିନୟୀ ଓ ବାଳକ ବାଳିକା-ମାନଙ୍କ ପ୍ରତି ସ୍ନେହଶୀଳ, ଯା'ର ମନରେ ଧନ, ପଦ ବା ଜାତିର ଅହଙ୍କାର ନାହିଁ, ସେହିଁ ପ୍ରକୃତ ଭଦ୍ରଲୋକ । ପ୍ରକୃତ ଭଦ୍ରଲୋକର ହୃଦୟ ସକଳ ଶ୍ରେଣୀର ମନୁଷ୍ୟମାନଙ୍କ ବ୍ୟତୀତ ପଶୁପକ୍ଷୀମାନଙ୍କ ପ୍ରତି ମଧ୍ୟ କୋମଳ ରହିବ । ସେ କାହାରି ମନରେ ନିଷ୍ଠୁର ବଚନ ବା କର୍ମଦ୍ୱାରା ଆଘାତ ଦେବାକୁ ଇଚ୍ଛା କରିବ ନାହିଁ । ଦିଲ୍ଲୀର ମୁସଲମାନ ସମ୍ରାଟ୍ ନାସିରୁଦ୍ଦିନ୍ ଜଣେ ଉତ୍ତମ ଭଦ୍ରଲୋକ ଥିଲେ । ସମ୍ରାଟ୍ ହୋଇ ମଧ୍ୟ ନିଜେ କୋରାଣ-ଗ୍ରନ୍ଥ ଲେଖି ଓ ତାକୁ ବିକି ସେଥିରୁ ଯାହା

ଯାଉଥିଲେ, ସେଇଥିରେ ବଞ୍ଚୁଥିଲେ । ସେ ଚାକର ରଖି ନ ଥିଲେ । ତେଣୁ ତାଙ୍କର ବେଗମ୍ ତାଙ୍କପାଇଁ ରାନ୍ଧୁଥିଲେ । ଥରେ ବେଗମ୍‌ଙ୍କର ହାତ ପୋଡ଼ିଯିବାରୁ ସେ ସମ୍ରାଟଙ୍କୁ ଗୋଟିଏ ଖାନସାମା ନିଯୁକ୍ତ କରିବାକୁ କହିଲେ । ସମ୍ରାଟ ଉତ୍ତର କଲେ, "ଗୋଟିଏ ଲୋକ ନିଯୁକ୍ତ କରିବାକୁ ମୋର ପଇସା କାହିଁ ?" ମହାରାଣୀ କହିଲେ, "ତମେ ଅର୍ଦ୍ଧଭାରତର ବାଦଶାହା, ତମର ପଇସା ନାହିଁ ?" ସମ୍ରାଟ କହିଲେ, "ମୋର ଗନ୍ତାଘରେ ପ୍ରଚୁର ସମ୍ପତ୍ତି ଅଛି । କିନ୍ତୁ ସେସବୁ ପ୍ରଜାଙ୍କର । ମୋର ସୁଖ ପାଇଁ ତାହା ବ୍ୟୟ କରିବା ଅନ୍ୟାୟ ହେବ ।" ଥରେ ସମ୍ରାଟ୍ ନାସିରୁଦ୍ଦିନ୍ କୋରାଣ ଲେଖିଲାବେଳେ ତାଙ୍କର ଜଣେ ବନ୍ଧୁ ତାଙ୍କ ନିକଟକୁ ଆସିଲେ । ବନ୍ଧୁଟି ତାଙ୍କ ଲେଖା ଉପରେ ଆଖି ବୁଲେଇ ଗୋଟିଏ ଶବ୍ଦ ଭୁଲ ଲେଖାହୋଇଛି ବୋଲି ଦେଖାଇଲେ । ସମ୍ରାଟ୍ କିଛି ନ କହି ସେ ଶବ୍ଦର ଚାରିପାଖେ ଗୋଟିଏ ମୁଣ୍ଡୁଳା ବୁଲାଇ ଦେଲେ । ବନ୍ଧୁ ଜାଣିଲେ ଯେ, ସମ୍ରାଟ ତାଙ୍କ ଭୁଲ ସ୍ୱୀକାର କଲେ ଏବଂ ନିଜର ପାଣ୍ଡିତ୍ୟରେ ସେ ଗର୍ବ ଅନୁଭବ କଲେ । ବନ୍ଧୁ ଚାଲିଗଲେ । ସମ୍ରାଟ୍ ମୁଣ୍ଡୁଳାଟି ଲିଭାଇ ଦେଲେ । କାରଣ ସମ୍ରାଟ୍ ଉତ୍ତମରୂପେ ଜାଣିଥିଲେ ଯେ, ସେ ଯାହା ଲେଖିଥିଲେ, ତାହା ଠିକ୍ । କେବଳ ବନ୍ଧୁଙ୍କ ମନରେ କଷ୍ଟ ହେବ ବୋଲି ସେ ପ୍ରତିବାଦ କଲେ ନାହିଁ ।

କିନ୍ତୁ ଭଦ୍ରଲୋକ ସବୁବେଳେ ନମ୍ର, ଶାନ୍ତ ହେବା ଦରକାର ନାହିଁ । ଦରକାର ପଡ଼ିଲେ ଭଦ୍ରଲୋକ ସମୁଚିତ କ୍ରୋଧ, ତର୍କ ଓ ସଂଗ୍ରାମର ଅସ୍ତ୍ର ନେଇ ପାରନ୍ତି । ବାଟରେ ଯାଉଛ, ତମେ ଦେଖିଲ ଜଣେ ଗୁଣ୍ଡା ଗୋଟିଏ ଦୁର୍ବଳ ପୁରୁଷ ବା

ସ୍ତ୍ରୀପ୍ରତି ଅତ୍ୟାଗ୍ଭର କରୁଛୁ । ସେଠାରେ ଶାନ୍ତ, ନମ୍ର ହେବା କାପୁରୁଷତା । ସେଠାରେ ଭଦ୍ରଲୋକ ତାହାର ଶକ୍ତିମତେ ଦୁର୍ବଳଙ୍କୁ ସାହାଯ୍ୟ କରି ପ୍ରବଳର ଅତ୍ୟାଗ୍ଭର ରୋଧ କରିବା ଉଚିତ । ଏଥିପାଇଁ ବଳଶାଳୀ ଦେହ ଓ ମନ ଦରକାର । ପ୍ରତ୍ୟେକ ପୁରୁଷଙ୍କୁ ସେଥିପାଇଁ ସମୁଚିତ ବ୍ୟାୟାମ କରି ଦେହକୁ ଠାଣ କରି ରଖିବା ଉଚିତ । ପୁରାଣ ଯୁଗରେ ଅର୍ଜୁନ ଭଦ୍ରତାର ଏକ ଉତ୍କୃଷ୍ଟ ଦୃଷ୍ଟାନ୍ତ । ସେ ପଣ୍ଡିତ ଲୋକ ଥିଲେ, ଏଣେ ଶ୍ରେଷ୍ଠ ବୀର ଥିଲେ । ଦୁର୍ବଳଙ୍କୁ ରକ୍ଷା କରିବା ପାଇଁ ତାଙ୍କର ଧନୁର୍ବାଣ ସବୁବେଳେ ପ୍ରସ୍ତୁତ ଥିଲା ।

ଭଦ୍ରଲୋକ ପର ଉପରେ ନିର୍ଭର କରିବା ଅପେକ୍ଷା ନିଜର ଝାଳବୁହା ଅନ୍ନମୁଠାକୁ ବେଶି ସମ୍ମାନଜନକ ମନେ କରିବ । ନିଜର କଷ୍ଟଦ୍ୱାରା ଅନ୍ୟର କଷ୍ଟ ଘୁଞ୍ଚେଇବାକୁ ସବୁବେଳେ ପ୍ରସ୍ତୁତ ଥିବ, ଅନ୍ୟ ମନରେ ଅକାରଣ ଆଘାତ କରିବ ନାହିଁ । ଧନ, ପୋଷାକ, ପଦ, ହାକମି, ଆଭିଜାତ୍ୟ—ଏଗୁଡ଼ିକ ଭଦ୍ରତାର କୌଣସି ଚିହ୍ନ ନୁହେଁ ।

## ପ୍ରଶ୍ନ

୧ । "ବିନୟ ଓ ନମ୍ରତା ଭଦ୍ରଲୋକ ପକ୍ଷେ ଅପରିହାର୍ଯ୍ୟ ଗୁଣ ହେଲେ ସୁଦ୍ଧା ସବୁକ୍ଷେତ୍ରରେ ତାହା ବରଣୀୟ ବା ଆଚରଣୀୟ ନୁହେଁ'—ଏହି ଉକ୍ତିକୁ ଅବଲମ୍ବନ କରି ଅନତିଦୀର୍ଘ ପ୍ରବନ୍ଧଟିଏ ଲେଖ ।

୨ । ଜଣେ ଭଦ୍ରଲୋକର ଦୈନିକ ବ୍ୟବହାର କିପରି ହେବା ଉଚିତ ?

# ହକିମ୍ ଅଜମଲ୍ ଖାଁ

ଯେଉଁ କେତେକ ବିଶିଷ୍ଟ ମୁସଲମାନ ନେତା ଭାରତର ହିନ୍ଦୁ ଓ ମୁସଲମାନ, ଉଭୟ ସମ୍ପ୍ରଦାୟର ହୃଦୟ ଅଧିକାର କରି ପାରିଛନ୍ତି, ହକିମ୍ ଅଜମଲ୍ ଖାଁ ସେମାନଙ୍କ ମଧ୍ୟରେ ଏକତମ । ମହାତ୍ମା ଗାନ୍ଧି ଏକ ସମୟରେ କହିଥିଲେ—"ଭାରତର ଜନନାୟକମାନଙ୍କ ମଧ୍ୟରେ ଏକମାତ୍ର ହକିମ୍ ଅଜମଲ୍ ଖାଁ ହିଁ ହିନ୍ଦୁ ଓ ମୁସଲମାନଙ୍କ ଶ୍ରଦ୍ଧା ସମଭାବରେ ଆକର୍ଷଣ କରିବାକୁ ସମର୍ଥ ହୋଇଅଛନ୍ତି ।"

ହକିମ୍ ଅଜମଲ୍ ଭାରତର ରାଜଧାନୀ ଦିଲ୍ଲୀନଗରୀରେ ହିଜରୀ ୧୨୮୪ ସାଲରେ ଜନ୍ମଗ୍ରହଣ କରିଥିଲେ । ଦିଲ୍ଲୀ ହିଁ ତାଙ୍କର କର୍ମଭୂମି ଥିଲା । ତାଙ୍କର ପୂର୍ବପୁରୁଷମାନେ ତୁର୍କିସ୍ଥାନ ଅନ୍ତର୍ଗତ କାସ୍‌ଗର ନଗରର ଅଧିବାସୀ ଥିଲେ । ସେମାନଙ୍କ ମଧ୍ୟରୁ ଜଣେ ବାବରଙ୍କର ସୈନ୍ୟବିଭାଗରେ ଉଚ୍ଚ କର୍ମଚାରୀ ଥିଲେ ଏବଂ ବାବର ଭାରତ ଆକ୍ରମଣ କଲାବେଳେ ତାଙ୍କର ସମଭି-ବ୍ୟାହାରରେ ଦିଲ୍ଲୀକୁ ଆସି ସେହିଠାରେ ବାସ କରିବାକୁ ଲାଗିଲେ । ବହୁ ପୁରୁଷ ଧରି ସୈନିକବୃତ୍ତି ହିଁ ଏହି ବଂଶର କୌଳିକ ଜୀବିକା ଥିଲା ।

ହକିମ୍ ଅଜମଲ୍‌ଙ୍କର ବୃଦ୍ଧ ପିତାମହ ଫଜଲ ଖାଁ ସର୍ବ-ପ୍ରଥମେ ପୂର୍ବପୁରୁଷମାନଙ୍କର ଯୁଦ୍ଧ-ବ୍ୟବସାୟ ପରିତ୍ୟାଗ କରି ୟୁନାନୀ ଚିକିତ୍ସା-ବ୍ୟବସାୟ ଆରମ୍ଭ କଲେ ଏବଂ ସେହି ବ୍ୟବସାୟରେ ସେ ଯଥେଷ୍ଟ ପ୍ରତିଷ୍ଠା ଲାଭ କଲେ । ଏହି ବ୍ୟବସାୟ ଏଣିକି ବଂଶାନୁକ୍ରମିକ ହୋଇପଡ଼ିଲା ଏବଂ ଏମାନଙ୍କ ହାତରେ

ୟୁନାନୀ ଚିକିତ୍ସାର ଗୌରବ ବହୁପରିମାଣରେ ବୃଦ୍ଧି ପାଇଥିଲା ।

ଅଜମଲ୍ ଖାଁ ତିନି ଭାଇ । ଜ୍ୟେଷ୍ଠଭାଇ ହକିମ୍ ଅବଦୁଲ ମଜିଦ୍ ଖାଁ ଏକ ବିଖ୍ୟାତ ଚିକିତ୍ସକ ଥିଲେ । ୟୁନାନୀ ଚିକିତ୍ସାର ବୈଜ୍ଞାନିକ ଅନୁଶୀଳନ ଓ ପ୍ରଚାରପାଇଁ ସେ ଦିଲ୍ଲୀନଗରୀରେ 'ତିବ୍ଵିୟା ସ୍କୁଲ' ପ୍ରତିଷ୍ଠା କରିଯାଇଅଛନ୍ତି । ଏହା ତାଙ୍କର ଅକ୍ଷୟ କୀର୍ତ୍ତି । କାରଣ ଏହାହିଁ ଭାରତବର୍ଷରେ ୟୁନାନୀ ଚିକିତ୍ସା ବିଦ୍ୟାର ଶ୍ରେଷ୍ଠ ଶିକ୍ଷା କେନ୍ଦ୍ର । ଅବଦୁଲ ମଜିଦ୍ ଓ ତାଙ୍କ ତଳ ଭାଇ ୱସିଲ ଖାଁ ଅଳ୍ପ ବୟସରେ ମୃତ୍ୟୁ ପ୍ରାପ୍ତ ହେବାରୁ ତିବ୍ଵିୟା ସ୍କୁଲର ପରିଚାଳନା ଭାର ହକିମ୍ ଅଜମଲ ଖାଁଙ୍କ ତରୁଣ ସ୍କନ୍ଧରେ ପଡ଼ିଥିଲା । ୱସିଲ ଖାଁଙ୍କ ପ୍ରାଣବିୟୋଗ ସମୟରେ ଅଜମଲ ଚତୁର୍ବିଂଶତିବର୍ଷୀୟ ଯୁବକ ମାତ୍ର । କିନ୍ତୁ ଏହି ତରୁଣ ବୟସରେ ଭାରତ ପ୍ରସିଦ୍ଧ ଏହି ଶିକ୍ଷା କେନ୍ଦ୍ରର ଅଧ୍ୟକ୍ଷତା ଗ୍ରହଣ କରି ହକିମ୍ ଅଜମଲ ଯେଉଁ ଅସାଧାରଣ କର୍ମଦକ୍ଷତା ଓ ଚିକିତ୍ସାଜ୍ଞାନର ପରିଚୟ ଦେଲେ, ତାହା ବାସ୍ତବିକ ବିସ୍ମୟକର । ତାଙ୍କର ପାଣ୍ଡିତ୍ୟ ଦ୍ଵାରା ଆକୃଷ୍ଟ ହୋଇ ସୁଦୂର ମାସିଡୋନିଆ, ଆଲ-ବେନିଆ ଓ ତୁର୍କିସ୍ଥାନରୁ ଛାତ୍ରଗଣ ତିବ୍ଵିୟା ସ୍କୁଲରେ ଅଧ୍ୟୟନ କରିବାକୁ ଆସୁଥିଲେ ।

ତାଙ୍କର ଜୀବନକାଳରେ ହକିମ୍ ଅଜମଲ୍ ଭାରତର ସର୍ବ-ଶ୍ରେଷ୍ଠ ୟୁନାନୀ ଚିକିତ୍ସକ ଥିଲେ । କିନ୍ତୁ ତାହା ବୋଲି କେହି ମନେକରିବେ ନାହିଁ ଯେ, ଚିକିତ୍ସା ବିଦ୍ୟା ଛଡ଼ା ତାଙ୍କୁ ଆଉ କିଛି ଜଣା ନ ଥିଲା । ପାର୍ଶୀ ଓ ଆରବୀ ଭାଷା, ଜ୍ୟୋତିଷ, ଗଣିତ, ବିଜ୍ଞାନ, ଦର୍ଶନ, ସାହିତ୍ୟ ପ୍ରଭୃତିରେ ତାଙ୍କର ଅସାଧାରଣ

ପାଣ୍ଡିତ୍ୟ ଥିଲା । ଉତ୍ତରୋତ୍ତର ଜ୍ଞାନ ଲାଭପାଇଁ ତାଙ୍କର ମନ ସବୁବେଳେ ଉନ୍ମୁକ୍ତ ହୋଇ ରହୁଥାଏ । ବହୁଦର୍ଶିତାଲାଭ କରିବା ଆଶାରେହିଁ ସେ ୧୯୦୪ ଖ୍ରୀଷ୍ଟାବ୍ଦରେ ବିଦେଶ ଭ୍ରମଣରେ ବାହାରିଲେ । ଇଜିପ୍ଟ, ମେସୋପଟାମିୟା, ତୁର୍କି, ଫ୍ରାନ୍ସ, ଜର୍ମାନୀ ଓ ଇଂଲଣ୍ଡ ପ୍ରଭୃତି ଦେଶରେ ବହୁବାର ଭ୍ରମଣ କରି ଏବଂ ଭିନ୍ନ ଭିନ୍ନ ଦେଶର ଚିକିତ୍ସାବ୍ୟବସ୍ଥା ଦେଖି ସେ ପ୍ରଭୂତ ଅଭିଜ୍ଞତା ଅର୍ଜ୍ଜନ କରିଥିଲେ । ଭାରତ ବାହାରେ ବିଭିନ୍ନ ଚିକିତ୍ସା ଅନୁଷ୍ଠାନ ପକ୍ଷରୁ ହକିମ୍ ସାହେବ ଯେପରି ବିପୁଳଭାବରେ ସମ୍ବର୍ଦ୍ଧିତ ହୋଇଥିଲେ, ଭାରତୀୟ ଅନ୍ୟ କୌଣସି ଚିକିତ୍ସକଙ୍କ ଭାଗ୍ୟରେ ସେପରି ଘଟି ନାହିଁ ।

ହକିମ୍ ସାହେବ ଗୃହଦ୍ୱାର ଅତିଥିମାନଙ୍କ ଲାଗି ସର୍ବଦା ଉନ୍ମୁକ୍ତ ଥିଲା । ଯେଉଁସବୁ ·ବିଦେଶୀ ଭ୍ରମଣକାରୀ ଦିଲ୍ଲୀ ଓ ଆଗ୍ରା ଆସନ୍ତି, ସେମାନେ ପ୍ରାୟ ହକିମ୍ ସାହେବଙ୍କର ଆତିଥ୍ୟ ଭୋଗ କରୁଥିଲେ । ଅତିଥିସତ୍କାର ଓ ଅନ୍ୟାନ୍ୟ ବହୁବିଧ ସତ୍‌କାର୍ଯ୍ୟ ଲାଗି ସେ ଜୀବନରେ ଯେଉଁ ଅକୁଣ୍ଠିତ ବ୍ୟୟ କରି-ଯାଇଛନ୍ତି, ତାହାର କୌଣସି ହିସାବ କେହି ଦେଇ ପାରିବ ନାହିଁ । କାରଣ ଧର୍ମନାମରେ ଆଡ଼ମ୍ବର କରିବାର ଲୋକ ସେ ନ ଥିଲେ । ତାଙ୍କର ଦକ୍ଷିଣ ହସ୍ତ ଯାହା ଦେଉଥିଲା, ତାହା ତାଙ୍କର ବାମହସ୍ତ ଜାଣି ପାରୁ ନ ଥିଲା । ଅସାଧାରଣ ପାଣ୍ଡିତ୍ୟ ଓ ଚିକିତ୍ସକ ଭାବରେ ଶ୍ରେଷ୍ଠତ୍ୱ ସଙ୍ଗେ ଚରିତ୍ରର ଏହି ଅସାଧାରଣ ମହତ୍ତ୍ୱ, ହକିମ୍ ଅଜମଲଙ୍କୁ ସହସ୍ର ସହସ୍ର ନରନାରୀଙ୍କ ହୃଦୟରେ ନମସ୍ୟ କରି ରଖିଥିବ ।

ଭାରତୀୟ କୌଣସି ଚିକିତ୍ସକ ହକିମ୍ ଅଜମଲ୍‌ଙ୍କ ପରି ଚିକିତ୍ସା-ବ୍ୟବସାୟରେ ଏପରି ବିପୁଳ ସମ୍ପତ୍ତି ଅର୍ଜ୍ଜନ କରିମାରି

ନାହାନ୍ତି । ଅର୍ଜିତ ଅର୍ଥର ସଦ୍‌ବ୍ୟୟ ମଧ୍ୟ ଅନ୍ୟ କେହି ଶିକ୍ଷକ ତାଙ୍କଠାରୁ କରିପାରି ନାହାନ୍ତି । ଆଲିଗଡ଼ରେ ସୁପ୍ରସିଦ୍ଧ ମୁସଲିମ୍ ବିଶ୍ୱବିଦ୍ୟାଳୟ ଲାଗି ସେ ଅଜସ୍ର ଅର୍ଥବ୍ୟୟ କରିସାରିଅଛନ୍ତି । ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀକୁ ସ୍ଥାନାନ୍ତରିତ ହୁଅନ୍ତେ ଦିଲ୍ଲୀନଗରୀ ଲୋକସଂଖ୍ୟା ଓ ସେମାନଙ୍କ ଲାଗି ସ୍ୱାସ୍ଥ୍ୟକର ବସବାସ ଯୋଗାଇବାର ସମସ୍ୟା ବଢ଼ିଯାଇଥିଲା । ତଦାନୀନ୍ତନ ବଡ଼ଲାଟ ଲର୍ଡ଼ ହାର୍ଡ଼ିଞ୍ଜଙ୍କୁ ଏ ଦିଗରେ ସାହାଯ୍ୟ ଦେବାରେ ହକିମ୍ ଅଜମଲ ତାଙ୍କର ଦକ୍ଷିଣହସ୍ତ-ସ୍ୱରୂପ ଥିଲେ । ସର୍ବ-ସାଧାରଣଙ୍କ ଉପକାର ଲାଗି ହକିମ୍ ସାହେବ ପରେ ଦିଲ୍ଲୀରେ ଏକ ସୁବୃହତ୍ ହାସପାତାଲ ପ୍ରତିଷ୍ଠା କରିଯାଇଅଛନ୍ତି । ତାହା ଲର୍ଡ଼ ଓ ଲେଡ଼ି ହାର୍ଡ଼ିଞ୍ଜଙ୍କ ନାମରେ ସଂକେତକ ଓ ଭାରତ ପ୍ରସିଦ୍ଧ ହୋଇଅଛି ।

ହକିମ୍ ସାହେବ ତାଙ୍କର ଏହିପ୍ରକାର କର୍ମମୟ ଜୀବନ ମଧ୍ୟରେ ଭାରତୀୟ ମହାଜାତି ପ୍ରତି ନିଜର କର୍ତ୍ତବ୍ୟ ମଧ୍ୟ ଭୁଲିଯାଇ ନ ଥିଲେ । ୟୁରୋପ ଭ୍ରମଣବେଳେ ଭାରତୀୟମାନଙ୍କ ପ୍ରତି ଯେଉଁ ଅନ୍ୟାୟ ବ୍ୟବହାର ହୋଇଅଛି;ତାହା ସେ ହୃଦୟଙ୍ଗମ କରି ମାନସିକ ପୀଡ଼ା ଅନୁଭବ କରିଥିଲେ । ୟୁରୋପରୁ ଫେରି ତେଣୁ ସେ ରାଜନୀତିରେ ଯୋଗଦେଇଥିଲେ ଏବଂ ଭାରତୀୟମାନଙ୍କର ନ୍ୟାଯ୍ୟ ଦାବୀ ପାଇଁ ଏଣିକି ବରାବର ଲଢ଼ିବାକୁ ଲାଗିଲେ । କ୍ରମେ ସେ ଏପରି ଲୋକପ୍ରିୟ ହୋଇ ଉଠିଲେ ଯେ ୧୯୨୧ ଖ୍ରୀଷ୍ଟାବ୍ଦରେ ସେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ରୂପେ ସର୍ବସମ୍ମତିକ୍ରମେ ନିର୍ବାଚିତ ହୋଇଥିଲେ ।

ହିନ୍ଦୁ ଓ ମୁସଲମାନ କିପରି ଦୁଇ ଭାଇ ପରି ଚଳିବେ, ଏଥିପାଇଁ ସେ ଅତ୍ୟନ୍ତ ବ୍ୟାକୁଳ ଥିଲେ ଏବଂ ଏହି ସଦ୍‌ଭାବ

ଆଣିବା ଲାଗି ସେ ଆମରଣ ଚେଷ୍ଟା କରିଯାଇଛନ୍ତି । ତାଙ୍କର ଦୃଢ଼ ଧାରଣା ଥିଲା ଯେ, ହିନ୍ଦୁ ଓ ମୁସଲମାନମାନଙ୍କ ମିଳନ ବିନା ଭାରତର ମୁକ୍ତି ଅସମ୍ଭବ । କଂଗ୍ରେସର ସଭାପତି ଭାବରେ ସେ କହିଥିଲେ, "ସମସ୍ତେ ଏକ ଈଶ୍ୱରଙ୍କ ସନ୍ତାନ, ଏଇ କଥା ପ୍ରାଣେ ପ୍ରାଣେ ଉପଲବ୍ଧି କରି ପାରିଲେ ଏକମୁହୂର୍ତ୍ତରେ ସାମ୍ପ୍ରଦାୟିକ ବିଦ୍ୱେଷର କଳଙ୍କ-କାଳିମା ଧୋଇ ହୋଇଯିବ । ସକଳ ଧର୍ମର ମୂଳସୂତ୍ର ଏକ । ଯେ ପ୍ରକୃତ ଧାର୍ମିକ ସେ ଜଗତର ସବୁ ଧର୍ମକୁ ଶ୍ରଦ୍ଧା କରେ ।"

ହକିମ୍ ଅଜମଲ ଭାରତର ଶ୍ରେଷ୍ଠ ଚିକିତ୍ସକ, ପ୍ରଭୂତ ସମ୍ପତ୍ତିର ଅଧିକାରୀ, ଦେଶମାନ୍ୟ ଜନନେତା, ଅସାଧାରଣ ପଣ୍ଡିତ ଥିଲେହେଁ ଅତ୍ୟନ୍ତ ବିନୟୀ, ମିଷ୍ଟଭାଷୀ ଓ ନୀରବ କର୍ମୀ ଥିଲେ । ତାଙ୍କର ଚରିତ୍ର ଶୁଦ୍ଧ ଓ ମନ ଅତ୍ୟନ୍ତ ଉଦାର ଥିଲା । ତାଙ୍କର ଦାନ ଧର୍ମ ନିର୍ବିଶେଷରେ ଦୁଃସ୍ଥମାନଙ୍କର କଲ୍ୟାଣ କରୁଥିଲା । ଆଗନ୍ତୁକମାନଙ୍କୁ ସେ କେତେକ ମୁହୂର୍ତ୍ତର ଆଳାପରେ କିଣି ନେଉଥିଲେ । ସେ ଏକପ୍ରକାର ଅଜାତଶତ୍ରୁ ଥିଲେ । ତାଙ୍କ ମୃତ୍ୟୁରେ ଭାରତର ଯାହା କ୍ଷତି ହୋଇଅଛି ତାହା ଆଜି ପର୍ଯ୍ୟନ୍ତ ପୂର୍ଣ୍ଣ ହୋଇପାରି ନାହିଁ ।

## ପ୍ରଶ୍ନ

(କ) ୧ । ଅଜମଲ୍ ଖାଁଙ୍କ ବଂଶପରିଚୟ ଦିଅ ।

୨ । ବିଦେଶଭ୍ରମଣ କାଳରେ ଅଜମଲ୍ କେଉଁ ବିଷୟରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ ?

୩ । ଉପାର୍ଜିତ ଧନର ସେ କିପରି ସଦ୍‌ବ୍ୟବହାର କରୁଥିଲେ ?

୪ । ବିଦ୍ୱାନ୍, ଲୋକସେବକ ଓ ଜନନାୟକଭାବରେ ଅଜମଲଙ୍କ ଚରିତ୍ର ବର୍ଣ୍ଣନ କର ।

୫ । ଯୁନାନୀ ଚିକିତ୍ସା କଣ ?

(ଖ) ୧ । ଅଜାତଶତ୍ରୁ—ଏ ପଦର ସମାସ ବ୍ୟାଖ୍ୟା କର । ଅଜାତଶତ୍ରୁ କହିଲେ ଲୋକ କି ବିଶେଷଗୁଣର ଅଧିକାରୀ ବୋଲି ଜଣା ପଡ଼ିବ ?

୨ । ଦୁଃସ୍ଥ, ଅଭିଜ୍ଞ, ସତ୍କାର, ସମ୍ମତ—ଏ ଗୁଡ଼ିକର ବ୍ୟୁତ୍ପତ୍ତି ଲେଖି ବାକ୍ୟରେ ବ୍ୟବହାର କର ।

୩ । 'ଇକ' ପ୍ରତ୍ୟୟାନ୍ତ ୫ ଟି ଶବ୍ଦ କହ ।

—*—

## ବିଷକଣ୍ଠ

ଏକଦା ଦେବତା ଓ ଅସୁରମାନେ ଜାଣି ପାରିଲେ ଯେ, ସମୁଦ୍ର ଭିତରେ ଏପରି ଦ୍ରବ୍ୟ ଅଛି, ଯାହା ଖାଇଲେ ଆଉ ଜନ୍ମ ବା ମରଣର ଅଧୀନ ନ ହୋଇ ଜୀବ ଚିରଯୌବନ ଭୋଗ କରିବ । ଏହି ଦ୍ରବ୍ୟର ନାମ ଅମୃତ । ସେ କାଳରେ ଦେବତା ଓ ଅସୁରମାନଙ୍କର ବରାବର ଦ୍ୱନ୍ଦ୍ୱ ଲାଗିଥାଏ । ଯୁଦ୍ଧରେ ଉଭୟ ପକ୍ଷରୁ ଅସଂଖ୍ୟ ଲୋକ ନିହତ ହୋଇ, କ୍ରମେ ଉଭୟ ପକ୍ଷର ସଂଖ୍ୟା କମିବାକୁ ଲାଗିଲା । ଏତେଣୁ ସେମାନେ ଏପରି ଏକ ଦ୍ରବ୍ୟ ଖୋଜିବାକୁ ଲାଗିଲେ, ଯାହା ଖାଇଲେ ଜୀବର ଆଉ ମୃତ୍ୟୁ ହେବ ନାହିଁ । ତାହାହେଲେ ଲଢ଼େଇରେ ଜୟ ପରାଜୟ ସିନା ହେବ, କିନ୍ତୁ କେହି ଆଉ ମରିବେ ନାହିଁ ।

ସମୁଦ୍ରଗର୍ଭରୁ ଅମୃତ ପାଇବାପାଇଁ ଦେବତା ଓ ଅସୁରମାନେ ସମୁଦ୍ରକୂଳରେ ସମବେତ ହେଲେ । ସେମାନଙ୍କର

ଧାରଣା ହେଲା ଯେ, ଦୁଧକୁ ଖୁଆରେ ମନ୍ଥିଲେ ଯେପରି ଲହୁଣୀ ଆପେ ଆପେ ଦୁଧ ଉପରକୁ ଭାସିଉଠେ, ସେହିପରି ସେମାନେ କୌଣସି ଏକ ପ୍ରକାଣ୍ଡ ଖୁଆରେ ସମୁଦ୍ରକୁ ମନ୍ଥିଲେ ଅମୃତ ଉପରକୁ ଭାସି ଉଠିବ । କଳ୍ପନା ଅନୁଯାୟୀ କାର୍ଯ୍ୟ ହେଲା । ମନ୍ଦରପର୍ବତର ଉଚ୍ଚ ଶୃଙ୍ଗକୁ ଖୁଆ କରି ଓ ଅନନ୍ତନାଗକୁ ଖୁଆର ଦଉଡ଼ି କରି ପାଖେ ଦେବତା ଓ ପାଖେ ଅସୁରମାନେ ରହି ସମୁଦ୍ରକୁ ମନ୍ଥନ କରିବାକୁ ଲାଗିଲେ । ସେହି ଘୋର ମନ୍ଥନ ଫଳରେ ସମଗ୍ର ବାରିଧି ଫେନିଳ ହୋଇ ଉଠିଲା ଏବଂ ଖୁଆ ତଳେ ଗଭୀର ଭଉଁରି ହୋଇ ସମୁଦ୍ରର ତଳ ଦେଖାଯିବାକୁ ଲାଗିଲା ।

ଅନେକକାଳ ମନ୍ଥନ ପରେ କ୍ରମେ କ୍ରମେ ମଣି ମାଣିକ୍ୟାଦି ଅଷ୍ଟରତ୍ନ, ତା ପରେ ଐରାବତ ହସ୍ତୀ ଓ ଉଚ୍ଚୈଃଶ୍ରବା ଅଶ୍ୱ ବାହାରିଲେ । ତା ପରେ ପରମା ସୁନ୍ଦରୀ ଲକ୍ଷ୍ମୀ ଅମୃତର ଭାଣ୍ଡ ହାତରେ ଧରି ସମୁଦ୍ରରୁ ଉତ୍ଥିତା ହେଲେ । ଏ ସବୁ ଅପୂର୍ବ ଦ୍ରବ୍ୟ ଲାଭକରି ଦେବତା ଓ ଅସୁର ଉଭୟଙ୍କର ଲାଲସା ବଢ଼ିବାକୁ ଲାଗିଲା । ସେମାନେ ଆଉ କ'ଣ ଲୋଭନୀୟ ଜିନିଷ ବାହାରି ପାରେ ଭାବି ପୁଣି ସମୁଦ୍ରକୁ ମନ୍ଥିବାକୁ ଲାଗିଲେ । କିନ୍ତୁ ମନ୍ଥନର କଷ୍ଟ ଆଉ ସମ୍ଭାଳି ନ ପାରି ଅନନ୍ତ ନାଗ ବିଶ୍ୱ-ନାଶକ କାଳକୂଟ ବିଷ ବାନ୍ତି କରିବାକୁ ଲାଗିଲା ।

ସେହି କାଳକୂଟ ବିଷ ଏତେ ଭୟଙ୍କର ଯେ, ତାହାର ସ୍ପର୍ଶରେ ଆସିଲେ ହିଁ ଜୀବର ଜୀବନ ନାଶ ହେବ । ସେହି ବିଷ ବର୍ତ୍ତମାନ ସମୁଦ୍ରଜଳରେ ମିଶି ଜଗତର ସ୍ତରଅଡ଼େ ବ୍ୟାପ୍ତ ହେବ ଏବଂ ତାହା କ୍ରମେ ସମଗ୍ର ସୃଷ୍ଟିକୁ ଧ୍ୱଂସ କରିବ ।

ଦେବତା ଓ ଅସୁରମାନଙ୍କ ମଧ୍ୟରେ ଏଥିଲାଗି ଭାଳେଣି ପଡ଼ିଲା । ବର୍ତ୍ତମାନ ସୃଷ୍ଟି ଉଦ୍ଧାରଣର ଏକମାତ୍ର ଉପାୟ ହେଉଛି, ଜଣେ କେହି ସମଗ୍ର ବିଷକୁ ପାନ କରି ନିଜର ମୃତ୍ୟୁରେ ଜଗତକୁ ମୃତ୍ୟୁରୁ ଉଦ୍ଧାର କରିବା । କିନ୍ତୁ ସମବେତ ସୁରାସୁରମାନଙ୍କ ମଧ୍ୟରୁ କେହି ଏ ପ୍ରକାର ତ୍ୟାଗ ପାଇଁ ମଙ୍ଗିଲେ ନାହିଁ ।

ଅନ୍ୟ ସୁରାସୁରମାନେ ଯେତେବେଳେ ଭୋଗ୍ୟ ପଦାର୍ଥମାନ ପାଇବା ଲାଗି ବ୍ୟସ୍ତ, ମହାଦେବ ରୁଦ୍ର ସେତେବେଳେ କୈଳାସରେ ଧ୍ୟାନମଗ୍ନ । ସେ ଭୋଗବିଳାସରେ ଆଦୌ ମନ ଦିଅନ୍ତି ନାହିଁ । ବ୍ୟସନ-ପ୍ରିୟ ଅନ୍ୟ ଦେବତାମାନଙ୍କ ସଙ୍ଗ ଛାଡ଼ି କଠୋର ବ୍ରହ୍ମଚର୍ଯ୍ୟ ବ୍ରତ ଅବଲମ୍ବନ କରି କୈଳାସପର୍ବତର ଲୁଚାଯାଇଛି ଆଶ୍ରମରେ ଏକାକୀ କାଳ କାଟୁଥାନ୍ତି । ତାହାଙ୍କର ଏହି ସଙ୍ଗଛଡ଼ା ଓ ଟିକିଏ ରାଗି ପ୍ରକୃତି ଦେଖି ଅନ୍ୟ ଦେବତା-ମାନେ ତାଙ୍କୁ ରୁଦ୍ର ବୋଲି ଡାକୁଥିଲେ । ବର୍ତ୍ତମାନ ସଙ୍କଟ-କାଳରେ ସମସ୍ତେ ଭାବିଲେ, ଏକା ରୁଦ୍ର ଏହି ବିଷ ପାନ କରିପାରିବେ; ତେଣୁ ତାଙ୍କୁ ଡକାହେଲା । ରୁଦ୍ର ସମୁଦ୍ର-କୂଳରେ ଉପସ୍ଥିତ ହୋଇ ସମସ୍ତ କଥା ଶୁଣିଲେ ଓ ଦେଖିଲେ ଅନନ୍ତନାଗର ମୁହଁରୁ ବିଷ ବିନ୍ଦୁ ବିନ୍ଦୁ ହୋଇ ସମୁଦ୍ରରେ ପଡ଼ି କ୍ରମେ ବ୍ୟାପିଯାଉଛି । ତାହା ବେଶି ବ୍ୟାପିଗଲେ ସୃଷ୍ଟି ନାଶ କରିବ । ରୁଦ୍ର କାହାର ଅନୁରୋଧକୁ ଅପେକ୍ଷା ନ କରି ସମୁଦ୍ର ମଧ୍ୟରେ ପ୍ରବେଶ କଲେ ଏବଂ ବିଶ୍ୱର ଉପକାର ଲାଗି ଭୟଙ୍କର କାଳକୂଟ ବିଷକୁ ଅଞ୍ଜଳିରେ ଭର୍ତ୍ତି କରି ପାନ କରିବାକୁ ଲାଗିଲେ । ସୁରାସୁରମାନେ ସ୍ତବ୍ଧ ହୋଇ ଚାହିଁ ରହିଥାନ୍ତି । ବିଷ ପାନ ଶେଷ ହେଲା ପରେ ରୁଦ୍ର ଯେତେବେଳେ କୂଳକୁ ଫେରି ଆସିଲେ ସମସ୍ତେ ଭାବିଲେ ସେ ଆଉ ବଞ୍ଚିବେ ନାହିଁ ।

କିନ୍ତୁ ଏ ଆଶଙ୍କା ଅମୂଳକ ପ୍ରମାଣିତ ହେଲା । ମହାଯୋଗୀ ରୁଦ୍ର କାଳକୂଟ ବିଷକୁ ମଧ୍ୟ ଜୀର୍ଣ୍ଣ କରି ନେଲେ । କେବଳ ଏତିକି ଦେଖାଗଲା ଯେ, କାଳକୂଟର ତୀବ୍ର ଜ୍ୱାଳାରେ ଶିବଙ୍କ ଶୁକ୍ଳ କଣ୍ଠ ଟିକିଏ ବିବର୍ଣ୍ଣ ପଡ଼ିଯାଇଛି । ସୁରାସୁରମାନେ ରୁଦ୍ରଙ୍କୁ ତାଙ୍କର ବିପୁଳ ତ୍ୟାଗ ଲାଗି ଧନ୍ୟ ଧନ୍ୟ କଲେ । ସେହିଦିନଠାରୁ ରୁଦ୍ର



'ବିଷକଣ୍ଠ' ବା ନୀଳକଣ୍ଠ ବୋଲି ଜଗତରେ ପରିଚିତ । କିନ୍ତୁ ସେ ଯେଉଁ ନାମରେ ସବୁ ଠାରୁ ବେଶି ପରିଚିତ, ସେ ନାମ ମଧ୍ୟ ସେ ସେହିଦିନଠାରୁ ପାଇ ଆସିଛନ୍ତି । ସେ ନାମ ହେଉଛି 'ଶିବ', ଅର୍ଥାତ୍ ମଙ୍ଗଳମୟ । ଶିବ କାଳକୂଟ ବିଷ ପାନ କରି ସମଗ୍ର ସୃଷ୍ଟିର କି ମଙ୍ଗଳ କରିଅଛନ୍ତି, ତାହା ଆମ୍ଭେମାନେ ସହଜେ ବୁଝି ପାରିବା ।

## ପ୍ରଶ୍ନ

୧ । ଶିବଙ୍କର 'ବିଷ-କଣ୍ଠ' ବା ନୀଳକଣ୍ଠ ନାମ ହେଲା କାହିଁକି ?

୨ । ସେ କାଳକୂଟ ବିଷ ପାନକରି ବିଶ୍ୱର କି ମଙ୍ଗଳ କରିଅଛନ୍ତି ?

୩ । ବିଷ-କଣ୍ଠ, ନୀଳକଣ୍ଠ, ରୁଦ୍ର ଓ ଶିବ—ଏ ଗୁଡ଼ିକ ନାମ ମଧ୍ୟରୁ ତୁମକୁ କେଉଁଟି ଭଲ ଲାଗେ ଓ କାହିଁକି ?

୪ । ଶିବ, ଶିବା, ରୁଦ୍ର—ଏମାନଙ୍କର ଭିନ୍ନ ଭିନ୍ନ ଅର୍ଥ ଲେଖ ?

୫ । ସୁରାସୁର ଓ ତୁଷାରାଚ୍ଛନ୍ନ, ଏ ଦୁଇଟିର ସନ୍ଧି ବିଚ୍ଛେଦ କର ।

---

## ସତ୍ୟକାମ ଜାବାଳ

ପ୍ରାଚୀନ କାଳରେ ଗୌତମ ବୋଲି ଜଣେ ଆଚାର୍ଯ୍ୟ ଥିଲେ । ସେ ତାଙ୍କର ତପୋବନରେ ଅନେକଗୁଡ଼ିଏ ଶିଷ୍ୟଙ୍କୁ ବିଦ୍ୟାଶିକ୍ଷା ଦେଉଥାନ୍ତି । ଶିଷ୍ୟମାନେ ସମସ୍ତେ ବ୍ରାହ୍ମଣଜାତିର ଲୋକ ଥିଲେ । ଅନ୍ୟଜାତି ଲୋକଙ୍କର ବିଦ୍ୟାଚର୍ଚ୍ଚା କରିବାର ପ୍ରଥା ସେ କାଳରେ ନ ଥିଲା ।

ଦିନେ ଆଚାର୍ଯ୍ୟ ଗୌତମ, ସ୍ନାନାଦି କର୍ମ ଶେଷ କରି ଅଧ୍ୟାପନା ଆରମ୍ଭ କଲେ । ତାଙ୍କର ଚାରିପଟେ ଶିଷ୍ୟବୃନ୍ଦ ଘେରି ରହିଥିଲେ । ଗୌତମ ଶାସ୍ତ୍ରର ବ୍ୟାଖ୍ୟାନ କରିବାକୁ ଯାଉଅଛନ୍ତି, ଏପରି ସମୟରେ ଗୋଟିଏ ଅପରିଚିତ ବାଳକ ତାଙ୍କର ପଦ ବନ୍ଦନା କଲା । ତାର ଗୋଡ଼ରେ ବାଟର ଧୂଳି ଓ ମୁଖରେ ସ୍ୱେଦସ୍ରାବ ଦେଖି ମନେ ହେଉଥିଲା, ସେ ଦୂରରୁ ଆସିଛି । ସେ

ପ୍ରଣାମ କରି ଉଠିଲା ପରେ ଉପସ୍ଥିତ ଛାତ୍ରମାନେ ସମସ୍ତେ ତା ଆଡ଼କୁ ଅନାଇଲେ । ଗୌତମ ପଚାରିଲେ, "ବାବା, ତମେ କିଏ ? କେଉଁଠୁ ଆସିଛ ? ତୁମର ନାମ କଣ ? ମୁଁ ତୁମର କିଛି ଉପକାର କରିପାରେ ? ତୁମର ଯାହା କହିବାର ଅଛି ନିର୍ଭୟରେ କହ ।" ଆଗନ୍ତୁକ ବାଳକଟି ଟିକିଏ ଲାଜ ଲାଜ ହୋଇ ଉତ୍ତର ଦେଲା, "ମହାଭାଗ, ମୋର ନାମ ସତ୍ୟକାମ । ମୁଁ ନଗରରୁ ଆପଣଙ୍କ ନାମ ଶୁଣି ଆପଣଙ୍କଠାରୁ ବିଦ୍ୟାଶିକ୍ଷା କରିବାକୁ ଆସିଛି । ମୋର ଶିକ୍ଷା କରିବାକୁ ପ୍ରବଳ ଇଚ୍ଛା । ମୋତେ ଆପଣ ଶିଷ୍ୟରୂପେ ଗ୍ରହଣ କରନ୍ତୁ ।"

ଗୌତମ ତାହା ଶୁଣି କହିଲେ, "ବାପା, ତୁମର ପଢ଼ିବାର ଆଗ୍ରହ ଦେଖି ମୁଁ ଅତ୍ୟନ୍ତ ତୃପ୍ତ; କିନ୍ତୁ ମୁଁ କେବଳ ବ୍ରାହ୍ମଣ ଛାତ୍ରମାନଙ୍କୁ ଶିଷ୍ୟରୂପେ ଗ୍ରହଣ କରେ । ତୁମେ ବ୍ରାହ୍ମଣ ତ ? ତୁମର ଗୋତ୍ର ଓ ବଂଶ କହିଲ ?"

ଗୌତମଙ୍କ ପ୍ରଶ୍ନ ଶୁଣି ସତ୍ୟକାମ କି ଉତ୍ତର ଦେବ କିଛି ଠିକ୍ କରି ପାରିଲା ନାହିଁ । କିଛିକ୍ଷଣ ନୀରବ ରହିଲା ପରେ ସେ ମୁହଁ ତଳକୁ କରି କହିଲା, "ମହାଭାଗ ! ମୁଁ ମୋର ଗୋତ୍ର ଓ ବଂଶ କଥା କିଛି ଜାଣେ ନାହିଁ । ମୁଁ ମୋର ମା'ଙ୍କୁ ଏ ବିଷୟ ପଚାରି କାଲି ଆସି କହିବି ।" ଏକଥା ଶୁଣି ଗୌତମଙ୍କ ଶିଷ୍ୟମାନେ ହସି ଉଠିଲେ । ସେମାନେ ଧୀରେ ଧୀରେ କୁହାକୁହି ହେଲେ, "ଏଡ଼େ ପିଲାଟେ, ନିଜର ବଂଶ ବା ଗୋତ୍ର କହିପାରୁ ନାହିଁ, କି ଆଶ୍ଚର୍ଯ୍ୟ !" କିନ୍ତୁ ଗୌତମ ସେମାନଙ୍କୁ ନ ହସିବାକୁ କହି, ସତ୍ୟକାମକୁ 'ଅଚ୍ଛା ବାପା, ଯାଅ' ବୋଲି ବିଦାୟ ଦେଲେ ।

ସତ୍ୟକାମ ଘରକୁ ଫେରି ତା'ର ମା'ଙ୍କୁ ସମସ୍ତ କଥା କହିଲା ଓ ଗୌତମଙ୍କୁ କି ଉତ୍ତର ଦେବ ସେ କଥା ତାଙ୍କୁ ପଚାରିଲା । ସତ୍ୟକାମର ମା କହିଲେ, "ବାପା, ମୁଁ ମୋର ଜୀବିକା ଲାଗି ପିଲାଦିନୁ ଦାସୀ ବୃତ୍ତି କରି ଆସିଛି । ବହୁତ ଘରେ ବହୁ ଲୋକଙ୍କର ସେବା କରିଛି । ଆଚାର୍ଯ୍ୟଙ୍କୁ କହିବୁ ତୁ ଦାସୀର ପୁତ୍ର । ମୋ ନାମ ଜାବାଲୀ; ତେଣୁ ତୋର ନାମ ସତ୍ୟକାମ ଜାବାଲ ।"



ତହିଁ ଆରଦିନ ସକାଳେ ଆଚାର୍ଯ୍ୟ ଗୌତମ ପୂର୍ବପରି ନିତ୍ୟକର୍ମ ଶେଷ କରି ଅଧ୍ୟାପନା ଆରମ୍ଭ କରୁଅଛନ୍ତି, ଏପରି ସମୟରେ ସତ୍ୟକାମ ଜାବାଲ ସେଠାରେ ଉପସ୍ଥିତ ହେଲା । ତାଙ୍କୁ ଦେଖି ଗୌତମ ପଚାରିଲେ, "କି ବାପା, ମା'ଙ୍କଠାରୁ ବଂଶ ଓ ଗୋତ୍ର କଥା ବୁଝିଲ ?"

ସତ୍ୟକାମ ଉତ୍ତର ଦେଲ, "ମହାଭାଗ ! ମୋର ଜନନୀ ଏହିପରି କହିଲେ—'ବାପା, ମୁଁ ମୋର ଜୀବିକା ଲାଗି ପିଲାଦିନୁ ଦାସୀବୃତ୍ତି କରି ଆସିଛି । ବହୁ ଘରେ ବହୁ ଲୋକଙ୍କର ସେବା କରିଛି । ଆଚାର୍ଯ୍ୟଙ୍କୁ କହିବୁ ତୁ ଦାସୀର ପୁତ୍ର । ମୋ ନାମ ଜାବାଳୀ, ତେଣୁ ତୋର ନାମ ହୋଇଛି ସତ୍ୟକାମ ଜାବାଳ । ମହାଭାଗ ! ମୁଁ ଦାସୀର ପୁତ୍ର ହେଲେହେଁ ଆପଣଙ୍କ ପଦତଳେ ବସି ଜ୍ଞାନଲାଭ କରିବା ଲାଗି ତୀବ୍ର ଇଚ୍ଛା ଅଛି । ମୁଁ ଉଚ୍ଚ ବଂଶଜାତ ନୁହେଁ ବୋଲି ଆପଣ କ'ଣ ମୋତେ ଫେରାଇଦେବେ ?"

ଉଦାରମନା ଆଚାର୍ଯ୍ୟ ଗୌତମ ସତ୍ୟକାମର ଏହି ଉତ୍ତର ଶୁଣି ସହସା ନିଜ ଆସନରୁ ଉଠି ପଡ଼ିଲେ ଓ ସତ୍ୟକାମ ନିକଟକୁ ଯାଇ ତାକୁ ଆଲିଙ୍ଗନ କରି କହିଲେ, "ବାପା, ମୁଁ ତୁମ ଲାଗି ଆଜ ଆଶ୍ରମର ନିୟମ ଭଙ୍ଗ କଲି । ମୁଁ ତୁମକୁ ଫେରାଇ ଦେବି ନାହିଁ । ତୁମେ ଦାସୀପୁତ୍ର ହେଲେ ହେଁ ବ୍ରାହ୍ମଣପୁତ୍ର ପରି ମୁଁ ତୁମକୁ ଶିଷ୍ୟରୂପେ ଗ୍ରହଣ କଲି । ତୁମେ ଯେ ନିଜର ବଂଶ ସମ୍ବନ୍ଧରେ ସତ୍ୟକଥା କହିବାକୁ ଭୟ ବା ଲଜ୍ଜା କରିନାହିଁ ଓ ତୁମର ଜ୍ଞାନଲାଭପାଇଁ ଯେ ଗଭୀର ପିପାସା ଅଛି—ଏହାହିଁ ବ୍ରାହ୍ମଣର ଶ୍ରେଷ୍ଠ ଲକ୍ଷଣ । ତୁମେ ନୀଚକୁଳରେ ଜନ୍ମ ହେଲେ ମଧ୍ୟ ଗୁଣବଳରେ ବ୍ରାହ୍ମଣ ଶିଷ୍ୟର ସକଳ ଅଧିକାର ପାଇବାକୁ ସର୍ବଥା ସମର୍ଥ ।'

## ପ୍ରଶ୍ନ

(କ) ୧ । 'ସତ୍ୟକାମ ଜାବାଳ' ବାଳକଟିର ଏପରି ନାମକରଣ ହୋଇଅଛି କାହିଁକି ?

୨ । ଗୌତମ କାହିଁକି ଆଶ୍ରମ ନିୟମ ଭଙ୍ଗ କଲେ ?

୩ । ଋଷି ଯଦି ସତ୍ୟକାମଙ୍କୁ ଶିଷ୍ୟଭାବରେ ଗ୍ରହଣ କରି ନ ଥାନ୍ତେ, ତାଙ୍କର ଭୁଲ ହୋଇଥାନ୍ତା କି ?

କମ୍ଭା

ଜାତିଭେଦ ସମ୍ବନ୍ଧରେ ତୁମ୍ଭେ ଏ କଥାଟିରୁ କ'ଣ ଶିଖିଲ ?

(ଖ) ୧ । ବିପରୀତ ଲିଙ୍ଗ ଦିଅ—ଆଗ୍ରହୀ, ଶିଷ୍ୟ, ଛାତ୍ର, ସଙ୍ଗୀ ।

୨ । "ଆଚ୍ଛା ବାପା ଯାଅ"—ଏଠାରେ 'ବାପା' ଶବ୍ଦଟି କି ଅର୍ଥରେ ବ୍ୟବହୃତ ?

୩ । ବାକ୍ୟରେ ବ୍ୟବହାର କର—ସହସା, ପିପାସା, ବ୍ୟାଖ୍ୟାନ, ଆଗନ୍ତୁକ ।

୪ । ଶେଷ ଅନୁଚ୍ଛେଦରେ ଥିବା ଗୌତମଙ୍କ ଉକ୍ତିରେ ସତ୍ୟକାମଙ୍କ ଚରିତ୍ରରେ କି ବିଶେଷତ୍ୱ ଦେଖି ପାରୁଛ ?

---

## ସାମାଜିକ

ମନୁଷ୍ୟ, ସମାଜ ଦରକାର କରେ । ଏକାକୀ ରହିବା ମନୁଷ୍ୟ ପକ୍ଷରେ ଏତେ ଯନ୍ତ୍ରଣାଦାୟକ ଯେ କାରାଗାରରେ ଗୁରୁତର ଅପରାଧୀମାନଙ୍କୁ ପୃଥକ୍ ପୃଥକ୍ କରି ରଖାଯିବାର ବ୍ୟବସ୍ଥା ଅଛି । ମନୁଷ୍ୟର, ସମାଜ ଆବଶ୍ୟକ ଦୁଇଟି କାରଣରୁ । ପ୍ରଥମ ହେଉଛି ସାଙ୍ଗସୁଖ । ଶିଶୁ ଚାଲି ଶିଖିଲେ ତାର ପ୍ରଥମ ବିଳାସ ହେଉଛି, ଅନ୍ୟ ଶିଶୁମାନଙ୍କ ସହ କ୍ରୀଡ଼ା କୌତୁକ । ବଡ଼ ହେଲେ

ମଧ୍ୟ ମନୁଷ୍ୟ ପ୍ରତିଦିନ ପାଞ୍ଚଦଶ ଲୋକଙ୍କ ସଙ୍ଗେ ଯଦି କଥାଭାଷା ନ ହେଉଛି, ତାର ମନ ଖୁସିରହେ ନାହିଁ । ଦ୍ୱିତୀୟ କାରଣ ହେଉଛି, ସମାଜରେ ମନୁଷ୍ୟର ବ୍ୟବହାର୍ଯ୍ୟ ଦ୍ରବ୍ୟମାନଙ୍କର ସୁଲଭତା । ଜଣେ ମନୁଷ୍ୟ ଡାଲିଚାଉଳ, କଂସାବାସନ, ଲୁଗାପଟା, ଖଟ, ଚୌକି, ଦୁଧ ଦହି, ବହିପତ୍ର ଇତ୍ୟାଦି ଅନେକଦ୍ରବ୍ୟ ଦରକାର କରେ । ଏକାକୀ ସେ ନିଜେ ଏ ସବୁ ଦ୍ରବ୍ୟ କରିପାରିବ କି ? କିନ୍ତୁ ସମାଜ ମଧ୍ୟରେ ଏ ସବୁ ତା ପାଇଁ ତିଆରି ହୋଇରହିଛି । ସେ କେବଳ ଉଚିତ ମୂଲ୍ୟ ଦେଇ ସେ ସବୁ ସଂଗ୍ରହ କଲେ ହେଲା ।

ଯେଉଁ ସମାଜରୁ ଆମ୍ଭେମାନେ ଏତେ ଉପକାର ପାଉଁ, ଯାହାକିଛି ନ ଥିଲେ ଆମ୍ଭମାନଙ୍କ ଜୀବନ ଦୁର୍ବହ ହୋଇଉଠନ୍ତା ତାହାପ୍ରତି ଆମ୍ଭମାନଙ୍କର କ'ଣ କର୍ତ୍ତବ୍ୟ ନାହିଁ ? ଯେଉଁ ସମାଜରେ ଆମ୍ଭେମାନେ ବାସକରୁଁ ଏବଂ ଯାହାର ସହାୟତାରେ ଆମ୍ଭମାନଙ୍କର ଜୀବନରକ୍ଷଣ ସମ୍ଭବପର ହୋଇଅଛି, ତାର ସଂରକ୍ଷଣ ଓ ଉନ୍ନତିରେ ଆମ୍ଭମାନଙ୍କର ସାହାଯ୍ୟ କରିବା ଉଚିତ ନୁହେଁ କି ?

ଆମ ଦେଶରେ ଲୋକଙ୍କର ସ୍ୱାର୍ଥପରତା ବଡ଼ ଭୟଙ୍କର । ଆମ୍ଭେମାନେ ପ୍ରାୟ ନିଜକଥା ପ୍ରଥମେ ଭାବୁଁ; ତା ପରେ ଅନ୍ୟର କଥା, ସେଥିରୁ ଅଧିକା ହେଲେ ନିଜର ପରିବାର ବା ଗୋଷ୍ଠୀକଥା । କେତେକ ଲୋକ ଭାବନ୍ତି କିନ୍ତୁ ପରିବାର ଓ ଗୋଷ୍ଠୀମାନଙ୍କୁ ନେଇ ଗଠିତ ଜାତି କଥା ସେମାନେ କ୍ୱଚିତ୍ ମନକୁ ଆଣନ୍ତି । ଆମଦେଶର ଅଧିକାଂଶ ଲୋକ ନିଜର ବା ନିଜ ପରିବାରର ଉନ୍ନତି କରିବାରେ ହିଁ ଜୀବନଟାକୁ ନିବଦ୍ଧ କରନ୍ତି, ଦେଶର ବା ଜାତିର ମଙ୍ଗଳ ଭାବନ୍ତି ନାହିଁ ।

କିନ୍ତୁ ୟୁରୋପୀୟମାନେ ସବୁବେଳେ ନିଜକୁ ତାଙ୍କର ଜାତିର ଅଙ୍ଗ ମାନି ମନେକରି, ସବୁ କଥାରେ ତାଙ୍କଦ୍ୱାରା ଜାତିର ମାନ୍ ଯେପରି ରହେ, ସେ ବିଷୟରେ ବଡ଼ ତତ୍ପର । ଆମ୍ଭେମାନେ ଇତିହାସରେ ଡାକ୍ତର ବ୍ରାଉଟନ୍‌ଙ୍କ ଗଳ୍ପ ପଢ଼ିଥାଉଁ । ଏ ଜଣେ ଇଂରେଜ ଡାକ୍ତର । ସମ୍ରାଟ ସାଜାହାନଙ୍କ ସମୟରେ ଭାରତକୁ ଆସିଥିଲେ । ସେତେବେଳେ ଏ ଦେଶରେ ଇଂରେଜମାନଙ୍କର ପ୍ରତିପତ୍ତି ଆଦୌ ନ ଥିଲା । ଫରାସୀ, ପର୍ତ୍ତୁଗୀଜ୍ ଓ ଡଚମାନେ ଭାରତରେ ପ୍ରଭାବ ବିସ୍ତାର କରି ରହିଥିଲେ । ସମ୍ରାଟ୍ ସାଜାହାନଙ୍କ ଝିଅର ଦେହ ପୋଡ଼ିଯିବାରୁ ଅନେକ ପ୍ରକାର ଚିକିତ୍ସା ହେଲା; କିନ୍ତୁ କାହିଁରେ ଭଲ ହେଲା ନାହିଁ । ଶେଷରେ ଡାକ୍ତର ବ୍ରାଉଟନ୍ ସମ୍ରାଟକନ୍ୟାଙ୍କୁ ରୋଗ-ଯନ୍ତ୍ରଣାରୁ ମୁକ୍ତଦେଲେ । ସମ୍ରାଟ ସେଥିରେ ସନ୍ତୁଷ୍ଟ ହୋଇ ବ୍ରାଉଟନ୍‌ଙ୍କୁ ବର ମାଗିବାକୁ କହିଲେ । ବ୍ରାଉଟନ୍ କିନ୍ତୁ ନିଜ ପାଇଁ କିଛି ନ ମାଗି ତାଙ୍କ ଜାତିର ବାଣିଜ୍ୟ ପ୍ରସାର ପାଇଁ ପିପିଲି, ମାନ୍ଦ୍ରାଜ ଓ ଭାରତର ଅନ୍ୟାନ୍ୟ ସ୍ଥାନମାନଙ୍କରେ ଅଧିକାର ଦେବାକୁ ସମ୍ରାଟଙ୍କୁ ପ୍ରାର୍ଥନା କରିଥିଲେ । ତାହାର ଫଳରେ ଭାରତବର୍ଷରେ ଇଂରେଜ ସାମ୍ରାଜ୍ୟର ମୂଳପତ୍ତନ ହେଲା । ଅଥଚ ବ୍ରାଉଟନ୍ ଯେଉଁ ଦରିଦ୍ରକୁ ସେହି ଦରିଦ୍ର ରହି ପ୍ରାଣତ୍ୟାଗ କରିଥିଲେ । ଆମ୍ଭମାନଙ୍କ ମଧ୍ୟରୁ କେତେଜଣ ନିଜ କଥା ଭୁଲି ଜାତିକଥା ବଡ଼ କରି ଧରିବେ ? ମନେକର ଜଣେ ଓଡ଼ିଆ ବୈଦ୍ୟ ଯଦି ସମ୍ରାଟଙ୍କ କନ୍ୟାକୁ ଭଲ କରି ସମ୍ରାଟଙ୍କ ସନ୍ତୋଷଭାଜନ ହୋଇଥାନ୍ତେ, ତାହାହେଲେ ସେ କି ବ୍ରାଉଟନ୍‌ଙ୍କ ପଥ ଅନୁସରଣ କରିଥାନ୍ତେ ?

ସମାଜବଦ୍ଧ ବ୍ୟକ୍ତିର କର୍ତ୍ତବ୍ୟ ହେଉଛି, ସକଳ ଚିନ୍ତା, ସକଳ ଉନ୍ନତି-ପ୍ରଚେଷ୍ଟା ମଧ୍ୟରେ ସମାଜକୁ କେବେହେଲେ ଭୁଲି ନ ଯିବା । ତେଣୁ ସର୍ବଦା ସମାଜର କଲ୍ୟାଣରେ ଲକ୍ଷ୍ୟ ରଖି ଆମ୍ଭମାନଙ୍କର ପଦେ ପଦେ ଗତି କରିବାକୁ ହେବ ।

ଆମ ଦେଶର ଲୋକେ ଭୁଲିଯାନ୍ତି ଯେ ସମାଜର ଉନ୍ନତି ବା ଅବନତିରେ ଆମର ଉନ୍ନତି ବା ଅବନତି ଅବଶ୍ୟମ୍ଭାବୀ । କୌଣସି ଦେଶକୁ ବିଦେଶୀମାନେ ଅଧିକାର କଲେ ବିଜିତ ଦେଶର ସମସ୍ତେ ଦୁଃଖ ପାଇବେ, ତେଣୁ ସେ ଦେଶର ପ୍ରତ୍ୟେକ ଲୋକର ଉଚିତ୍ ଯେ, ସୈନିକ ହୋଇ ଦେଶକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବା । ଗତ ଦୁଇ ମହାଯୁଦ୍ଧରେ ସମଗ୍ର ଇଂରେଜ ଜାତି ବାଳ-ବୃଦ୍ଧ-ବନିତା-ନିର୍ବିଶେଷରେ ଦେଶକୁ ଯେପରି ସାହାଯ୍ୟ କରିଛି, ତାହା ପାଠକଲେ ବାସ୍ତବିକ ଇଂରେଜମାନଙ୍କ ପ୍ରତି ସମ୍ମାନରେ ମସ୍ତକ ଅବନତ ହୁଏ । ଦ୍ୱିତୀୟ ମହାଯୁଦ୍ଧରେ ଜର୍ମାନୀ ବ୍ୟୋମଯାନରୁ ଅତର୍କିତ ଭାବରେ ବୋମା ପକାଇ କେତେ କେତେ କୋଠାବାଡ଼ି ଚୂର୍ଣ୍ଣବିଚୂର୍ଣ୍ଣ ଓ ଭୂମିସାତ୍ କରି ଲୋକମାନଙ୍କୁ ନିର୍ମମ ଭାବରେ ହତ୍ୟା ନ କଲା ! ଏ ଆକ୍ରମଣ ହେଲା ପୁଣି ରାତି ଅନ୍ଧକାରରେ । ଇଂଲଣ୍ଡର ସହସ୍ର ସହସ୍ର ସ୍ତ୍ରୀ ପୁରୁଷ ସାରାଦିନ ନିଜ ନିଜ କାମରେ ଖଟିଲାପରେ ସାରା ରାତି ଜାଗି ରହି, ଆହତ ଲୋକମାନଙ୍କୁ ତତ୍‌କ୍ଷଣାତ୍ ଚିକିତ୍ସା ଓ ଅନ୍ୟ ପ୍ରକାର ସାହାଯ୍ୟ ଦେବା ସଙ୍ଗେ ସଙ୍ଗେ ଅଗ୍ନି ନିର୍ବାପନର ବନ୍ଦୋବସ୍ତ କରୁଥିଲେ । ଦୋକାନୀ ସିଗାରେଟ୍ ପାକେଟ୍ ବିକାଳିବେଳେ

ପ୍ରତ୍ୟେକ ନେତାଙ୍କଠାରୁ ଗୋଟିଏ ଗୋଟିଏ ସିଗାରେଟ୍ ମାଗି ନେଇ, ସିଗାରେଟ୍ ବାକ୍ସରେ ଜମା କରୁଥିଲେ; କାରଣ ସେ ସେଗୁଡ଼ିକୁ ଇଂଲଣ୍ଡର ଯେଉଁ ପୁଅମାନେ ଦେଶପାଇଁ ଲଢ଼ୁଛନ୍ତି, ତାଙ୍କ ପାଇଁ ପଠାଇବେ । ନାରୀମାନେ ଟ୍ରେନ୍ ଓ ବସ୍‌ରେ ଗଲାବେଳେ ମଧ୍ୟ ସୈନିକମାନଙ୍କପାଇଁ ମୋଜାଇତ୍ୟାଦି ବୁଣିବାରେ ଲାଗିଥାଆନ୍ତି । ଗୃହକର୍ତ୍ତ୍ରୀମାନେ ଅଦରକାରୀ କାଗଜ, ଟିଣ, କାର୍ଡ଼ବୋର୍ଡ୍, ବାକ୍ସ, ଖାଦ୍ୟାବଶେଷକୁ ଜାତିର ଦରକାର ପାଇଁ ସାଇତି ରଖୁଥିଲେ । ଛୋଟ ଛୋଟ ପିଲାମାନେ ଆନନ୍ଦରେ ବାପାମାଆଙ୍କୁ ଛାଡ଼ି ଦୂରର ନିରାପଦ ସ୍ଥାନମାନଙ୍କୁ ଯାଇଛନ୍ତି । ବାପ-ମାଆମାନେ ମଧ୍ୟ ପିଲାଙ୍କୁ ବିନା ଅଶ୍ରୁପାତରେ ଦୂର ଜାଗାକୁ ପଠାଇ ଦେଇ ନିଜ ନିଜ କର୍ତ୍ତବ୍ୟରେ ଲାଗିଛନ୍ତି । ଥରେ ଗୋଟିଏ ଛୋଟ ବାଳକ ପିଠିରେ ଗୋଟିଏ ବଡ଼ଟ ବୋଝ ବୋହି ଜଣକ ଦୁଆରେ ଆସି ଭଙ୍ଗା ଟିଣ ଭିକ୍ଷାକଲା । ଗୃହକର୍ତ୍ତ୍ରୀ ତାଙ୍କ ଘରେ ଯାହା ଭଙ୍ଗା ଟିଣ ଥିଲା, ତାହା ତାକୁ ଦେଲେ, କିନ୍ତୁ କହିଲେ, "ବାପା, ଏ ବୋଝ ତୁ କେତେ ଦୂର ନେବୁ ? ତତେ ତ ବଡ଼ ଭାରୀ ହୋଇଥିବ ।" ବୀର ଇଂରେଜ-ବାଳକ ଉତ୍ତର ଦେଲା, "ମୁଁ ନ ବୋହିଲେ ଆଉ କିଏ ବୁହନ୍ତା ? ମୁଁ ବରାବର ଭଙ୍ଗାଟିଣସବୁ ଗୋଟେଇ ନିଏ । ସହରର ଡାକ୍ତରଖାନା ମୋ' ଉପରେ ଏଥିପାଇଁ ନିର୍ଭର କରି ରହିଛି ।" ଆମ୍ଭମାନଙ୍କର ବାଳକମାନେ ଦେଶ ପାଇଁ ଏପରି ଉତ୍ସାହ ଓ ନିଷ୍ଠାରେ କାମ କରିପାରିଲେ, ଦେଶର ଦୁର୍ଦ୍ଦଶା ରହନ୍ତା ନାହିଁ ।

କେହି ଅବଶ୍ୟ ଉପଦେଶ ଦେବ ନାହିଁ ଯେ, ଦେଶ ବା ସମାଜର ଉପକାର କରିବାକୁ ଯାଇ, ଆମ୍ଭେମାନେ ପିତାମାତା ବା

ଭାଇଭଉଣୀଙ୍କ ପ୍ରତି ଆମର କର୍ତ୍ତବ୍ୟ ଭୁଲିଯିବା । ବସ୍ତୁତଃ ତାହା ପ୍ରଥମ କର୍ତ୍ତବ୍ୟ । କିନ୍ତୁ ତାହା ଏକମାତ୍ର କର୍ତ୍ତବ୍ୟ ନୁହେଁ । ଆମର ସବୁବେଳେ ମନେ ରଖିବାକୁ ହେବ ଯେ ଅନ୍ୟ ସବୁ କର୍ତ୍ତବ୍ୟ-ମଧ୍ୟରେ ଦେଶ ବା ସମାଜ ପାଇଁ ଆମର ଏକ ଗୁରୁତର କର୍ତ୍ତବ୍ୟ-ରହିଛି । ଆମେ ଯେଉଁ ସମାଜରେ ଅଛୁଁ, ସେ ସମାଜରେ ଲକ୍ଷ ଲକ୍ଷ ଲୋକ ଉପାସରେ ଦିନ କଟାଉଛନ୍ତି; ଲକ୍ଷ ଲକ୍ଷ ଲୋକ ରୋଗବ୍ୟାଧିରେ ମରୁଛନ୍ତି, ଲକ୍ଷ ଲକ୍ଷ ପାଠ ପଢ଼ି ନ ପାରି ମୂର୍ଖ ହୋଇ ରହୁଛନ୍ତି । ଏସବୁ ମନକୁ ଆଣିଲେ ସ୍ୱାର୍ଥପର ଭାବରେ ନିଜପାଇଁ ବା ମୂର୍ଖ ଭାବରେ ଅକର୍ମା ଭାଇବନ୍ଧୁଙ୍କ ପାଇଁ ଅଯଥା ଅର୍ଥ ନଷ୍ଟ କରିବାକୁ ଇଚ୍ଛା ହେବନାହିଁ । ହୁଏତ, ରକ୍ଷିତ ଅର୍ଥ-ଔଷଧାଳୟ ବା ବିଦ୍ୟାଳୟ-ସ୍ଥାପନ ବା କୂପ ପୁଷ୍କରିଣୀ-ଖନନରେ ବ୍ୟୟିତ ହୋଇ ସମାଜର ସହସ୍ର ସହସ୍ର ଲୋକଙ୍କର ଉପକାରରେ ଆସିବ ।

ଆମ୍ଭମାନଙ୍କର ଦେଶରେ ସାଧୁ ସାମାଜିକ ଭାବର ବଡ଼ ଅଭାବ; ତେଣୁ ଆମର ପିଲାମାନଙ୍କୁ ବିଦ୍ୟାଳୟ-ସ୍ଥାପନ ଏ ଦିଗରେ ଶିକ୍ଷିତ କରିବା ଉଚିତ୍ । ବିଦ୍ୟାଳୟଟି ଗୋଟିଏ ଶ୍ରେଷ୍ଠ ସମାଜ ହେଲା । ପ୍ରତ୍ୟେକ ଛାତ୍ର ନିଜକୁ ସେହି ସମାଜର ଗୋଟିଏ ଅଂଶ ବୋଲି ମନେ କରିବେ । ତାଙ୍କର ଏହି ଆଦର୍ଶ ରହିବା ଉଚିତ ଯେ, ତାଙ୍କର କାର୍ଯ୍ୟଦ୍ୱାରା ତାଙ୍କ ସ୍କୁଲର ଗୌରବ ବୃଦ୍ଧି ପାଇବ, କଦାପି କ୍ଷୁଣ୍ଣ ହେବନାହିଁ । ସ୍କୁଲ କ୍ରୀଡ଼ା-କୌତୁକରେ ମଧ୍ୟ ଏହି ଭାବକୁ କ୍ରିୟାଶୀଳ କରାଯାଇପାରେ । ଖେଳିଲାବେଳେ ପ୍ରତ୍ୟେକ ଖେଳାଳୀ ନିଜର କୃତିତ୍ୱ ଦେଖାଇବାକୁ

ନ ଯାଇ, ନିଜପାଇଁ ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ହୋଇ ରହି ସମଗ୍ର ଦଳର ଫଳ ପ୍ରତି ଆଖି ରଖି; ନିଜର କର୍ତ୍ତବ୍ୟ କରିଯିବା ଉଚିତ । ଏହିପରି ଅଭ୍ୟାସ କଲେ କ୍ରମେ ନିଜର ସ୍ୱାର୍ଥପର-ଭାବ ଚପିହୋଇ ନିଃସ୍ୱାର୍ଥଭାବ ଜାଗ୍ରତ ହେବ । ସ୍କୁଲରେ କେହି ରୋଗୀ ହେଲେ ସମସ୍ତେ ତାର ସେବା କରିବାକୁ ବ୍ୟଗ୍ର ହେବେ । ବଡ଼ ହେଲେ ଏହି ଭାବ ମନୋହର ଦେଶପ୍ରେମରେ ପରିଣତ ହେବ । ପ୍ରକୃତ ଦେଶପ୍ରେମୀ ସାମାଜିକ ନିଃସ୍ୱାର୍ଥତାର ଗୋଟିଏ ଗୋଟିଏ ଦୃଷ୍ଟାନ୍ତ ।

## ପ୍ରଶ୍ନ

(କ) ୧ । ସମାଜ ବ୍ୟତୀତ ମନୁଷ୍ୟ ଚଳିପାରିବ ନାହିଁ କାହିଁକି ?

୨ । ଜଣେ ଧନୀ ଲୋକର କିପରି ଧନବ୍ୟୟ କରିବା ଉଚିତ ?

୩ । ଆମ ଜାତି ଯେଉଁ ସବୁ ଦୋଷଦୁର୍ବଳତା ନେଇ ଉନ୍ନତି କରିପାରୁ ନାହିଁ, ସେ ବିଷୟ ବର୍ଣ୍ଣନା କରି ପୁରୀଠାରେ ଥିବା ତୁମର ଜଣେ ସଙ୍ଗୀ ପାଖକୁ ଖଣ୍ଡିଏ ପତ୍ର ଦିଅ ।

୪ । ତୁମେ ଜଣେ ଇଂରେଜ ବାଳକର ଗୁଣକୁ ଅନୁକରଣ କରିବ, ନା ସେ ତୁମ ଗୁଣକୁ ଅନୁକରଣ କରିବ ? କାହିଁକି ?

(ଖ) ୧ । କ୍ୱଚିତ୍, ନିର୍ମମ, ନିର୍ବିଶେଷରେ, ହୃଏତ—ପ୍ରତ୍ୟେକକୁ ବାକ୍ୟରେ ବ୍ୟବହାର କର ।

୨। ଏକପଦରେ ପ୍ରକାଶ କର:—ଯେ ସମାଜରେ ରହେ, ଯାହା କଷ୍ଟରେ ବହନ କରାଯାଏ, କର୍ତ୍ତାଙ୍କର ସ୍ତ୍ରୀ, ନାହିଁ ସ୍ୱାର୍ଥ ଯହିଁରେ ।

୩। ସୁ ଓ ଦୁଃ ଉପସର୍ଗ ସାହାଯ୍ୟରେ ଗଠିତ ହୋଇଥିବା ଗୁଡ଼ିଏ ଯୋଡ଼ା ଶବ୍ଦ ଲେଖ ।

---

## ଶ୍ରୀମତୀ ଏଲିଜାବେଥ୍ ଫ୍ରାଇ

କୌଣସି ଲୋକ ଚୋରି, ହତ୍ୟା ପ୍ରଭୃତି ଅପରାଧ କଲେ ସରକାର ତାକୁ ଧରି ନେଇ ଜେଲ ରେ ବନ୍ଦୀ କରି ରଖିବାର ବ୍ୟବସ୍ଥା କରିଅଛନ୍ତି । ଏହାଦ୍ୱାରା ଅପରାଧକାରୀ ଶାସ୍ତି ପାଏ ଏବଂ ସମାଜର ଅନ୍ୟ ଲୋକେ ଶାନ୍ତିରେ ରହନ୍ତି । କିନ୍ତୁ ସରକାର ଅପରାଧୀମାନଙ୍କୁ କେବଳ ଶାସ୍ତି ଦିଅନ୍ତି ନାହିଁ, ଅପରାଧୀମାନେ ଯେପରି ସେମାନଙ୍କର କୁ-ଅଭ୍ୟାସ ସବୁ ପରିତ୍ୟାଗ କରି ଭଲ ମଣିଷ ହେବେ, ଏଥିପାଇଁ ମଧ୍ୟ ସରକାର ବ୍ୟବସ୍ଥା କରିଅଛନ୍ତି । ବାଳକ ଅପରାଧୀମାନଙ୍କ ଲାଗି ସ୍ୱତନ୍ତ୍ର ଜେଲ ଅଛି; ଯେଉଁଠାରେ କି ସେମାନଙ୍କୁ ବିଦ୍ୟା ଓ ବ୍ୟବସାୟ ଶିକ୍ଷା ଦିଆଯାଏ; ଫଳରେ କାରାଗାରରୁ ବାହାରି ସେମାନେ ସାଧୁ ଭାବରେ ଜୀବିକା ଅର୍ଜ୍ଜନ କରିବାକୁ ସମର୍ଥ ହୁଅନ୍ତି । ସବୁ ଶ୍ରେଣୀର କଏଦୀମାନଙ୍କ ପାଇଁ ସରକାର ଉପଯୁକ୍ତ ଖାଦ୍ୟ ଓ ବାସ ଯୋଗାନ୍ତି ଓ ରୋଗ ହେଲେ ଚିକିତ୍ସାର ବ୍ୟବସ୍ଥା ମଧ୍ୟ କରନ୍ତି । ଦଣ୍ଡସ୍ୱରୂପ

କଠିନ କର୍ମ କରିବାକୁ ଦିଆଗଲେ କଏଦୀମାନଙ୍କୁ ଧାରଣମିକ ମଧ୍ୟ ଦିଆଯାଏ ।

କିନ୍ତୁ ଦେଢ଼ଶ ବର୍ଷ ତଳେ କାରାଗାରମାନଙ୍କର ଅବସ୍ଥା ଏପରି ନ ଥିଲା । କାରାବାସ ଏପରି ଯନ୍ତ୍ରଣାମୟ ଓ ବନ୍ଦୀ-ଜୀବନ ଏପରି ଦୁର୍ବହ ଥିଲା ଯେ, ଏ କାଳରେ ଲୋକେ ତାହା ବିଶ୍ୱାସ କରିବେ ନାହିଁ । ଇଂଲଣ୍ଡ ଓ ୟୁରୋପ ଅନ୍ୟ ସଭ୍ୟ ଦେଶମାନଙ୍କରେ ସେ କାଳରେ ଦଣ୍ଡ ବିଧାନ ପ୍ରଥା ଅତି କଠୋର ଓ ନିର୍ମମ ଥିଲା ଏବଂ ବନ୍ଦୀମାନଙ୍କର ଅବସ୍ଥା ତଦ୍ରୂପ ଥିଲା । ସାମାନ୍ୟ ଫଳମୂଳ ବା ଖଣ୍ଡେ ରୁଟି ଚୋରି କଲେ ପ୍ରାଣଦଣ୍ଡର ବ୍ୟବସ୍ଥା ହେଉଥିଲା । ଥରେ ଇଂଲଣ୍ଡରେ ସରକାରୀ ଲୋକେ ଗୋଟିଏ ଯୁବକକୁ ସରକାରୀ କାର୍ଯ୍ୟ ଲାଗି ବଳପୂର୍ବକ ଧରି ନେଇଗଲେ । ଘରେ ତାର ସ୍ତ୍ରୀ ଓ ଗୋଟିଏ ଶିଶୁ ଅନାହାରରେ କାଳାତିପାତ କରିବାକୁ ଲାଗିଲେ । ଶିଶୁଟିର ଅସହାୟା ଜନନୀ ଗୋଟିଏ ପୋଷାକ ଚୋରି କରି ତାକୁ ବିକି,କିଛି ଖାଦ୍ୟ ଆଣିବ ବୋଲି ଚେଷ୍ଟା କରି ଧରା ପଡ଼ିଲା ଏବଂ ଫାଶି ପାଇଲା । ଯେଉଁ ସରକାର ତାର ଅନ୍ନଦାତା ସ୍ୱାମୀକୁ ଧରି ନେଇଗଲେ, ସେହି ପୁଣି ସେହି ନିଃସ୍ୱା ଅସହାୟା ନାରୀକୁ ପ୍ରାଣଦଣ୍ଡରେ ଦଣ୍ଡିତ କଲେ । ସେ କାଳରେ ଦଣ୍ଡବିଧି କିପରି ଅମାନୁଷିକ ଥିଲା, ଏଇଥିରୁ ଜଣା ପଡ଼ିବ ।

ଯେଉଁମାନେ ଅପରାଧ ଲାଗି ଦଣ୍ଡିତ ହେଉଥିଲେ, ସେମାନେ ଅତି ଜଘନ୍ୟ ଭାବରେ କାଳ କାଟୁଥିଲେ । ଜେଲ୍‌ଗୁଡ଼ିକ ମନୁଷ୍ୟ ବାସର ଅଯୋଗ୍ୟ ଥିଲା । ସେଗୁଡ଼ିକରେ ପ୍ରାୟ ବାୟୁ ଓ ଆଲୋକ ପ୍ରବେଶ ପାଇଁ ସୁବିଧା ନ ଥିଲା । କଏଦୀମାନଙ୍କ

ଖାଦ୍ୟବସ୍ତୁର କୌଣସି ସରକାରୀ ବନ୍ଦୋବସ୍ତ ନ ଥିଲା । ସେମାନଙ୍କୁ କୌଣସି କାମ ମଧ୍ୟ ଦିଆ ଯାଉ ନ ଥିଲା । ରାତ୍ରିରେ ସେମାନେ ଛେଳି ଗଡ଼ ଜନ୍ତୁମାନଙ୍କ ପରି ଜକାଜକି ହୋଇ ଶୋଇବାକୁ ବାଧ୍ୟ ହେଉଥିଲେ । ମୂଷା ଓ କୀଟମାନଙ୍କର ଅତ୍ୟାଚାରରେ ବେଳେବେଳେ ଶୋଇ ବି ହେଉ ନ ଥିଲା । କୌଣସି କାମ ନ ଥିବାରୁ କଏଦୀମାନେ ସାରାଦିନ ପରସ୍ପର ମଧ୍ୟରେ କଳିକଜିଆ କରି ଓ ଅସଭ୍ୟ ଭାବରେ ଗାଳି ଦିଆଦେଇ ହୋଇ କାଳ କାଟୁଥିଲେ । ଜେଲରୁ ବାହାରି ଅନେକ ଦାରିଦ୍ର୍ୟ ଯୋଗୁଁ ପୁଣି ଜେଲକୁ ଆସୁଥିଲେ । ଏ ସବୁ ଦେଖି ଜଣେ ବିଚାରପତି କହିଥିଲେ, "ଅପରାଧୀମାନଙ୍କର ସଂଶୋଧନ ଅସମ୍ଭବ । ଏମାନଙ୍କୁ ଫାଶି ଦେଇ ଦେବାହିଁ ସବୁଠୁଁ ଭଲ ।"

ଆଶ୍ଚର୍ଯ୍ୟର କଥା ଏହି ଯେ, ଜଣେ ଦୟାବତୀ ଇଂରେଜ ମହିଳାଙ୍କ ଯୋଗୁଁ ଏହି କଦର୍ଯ୍ୟ ଓ କଠୋର ପ୍ରଥାସବୁ ଏକାବେଳକେ ଲୁପ୍ତ ହୋଇଯାଇଅଛି ଏବଂ ଏବର କାରାଗାର ସବୁ ସଂସ୍କୃତ ଓ ମାନବୋଚିତ ହୋଇ ପାରିଅଛି । ଏହି ମହୀୟସୀ ଇଂରେଜ ରମଣୀଙ୍କ ନାମ ଶ୍ରୀମତୀ ଏଲିଜାବେଥ୍ ଫ୍ରାଇ ।

ଏଲିଜାବେଥ୍ ଇଂଲଣ୍ଡର ନର୍ୱିଚ୍ ନାମକ ପ୍ରସିଦ୍ଧ ସହରର ନିକଟସ୍ଥ ଏକ ପଲ୍ଲୀରେ ଧନିକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେମାନେ ଥିଲେ ସାତ ଭଉଣୀ; ଅନ୍ୟ ଭଉଣୀମାନଙ୍କସହ ଏଲିଜାବେଥ୍ ବିଦ୍ୟାଧ୍ୟୟନ ସଙ୍ଗେ ନୃତ୍ୟ ଗୀତାଦି ଆମୋଦ-ପ୍ରମୋଦରେ ବାଲ୍ୟ ଓ ଯୌବନ କଟାଇଥିଲେ । କିନ୍ତୁ ତାଙ୍କର ମନ ଏ ସବୁଥିରେ ଆଦୌ ଲାଗୁ ନ ଥିଲା । ବିଶୁଦ୍ଧ ଧାର୍ମିକ, ପରୋପକାରୀ ଜୀବନଯାପନ ପାଇଁ ତାଙ୍କର ଚିତ୍ତ ସବୁବେଳେ ପ୍ରୟାସୀ

ରହୁଥାଏ । ଏହି ସମୟରେ ତାଙ୍କ ଡାଏରୀରେ ସେ ଲେଖିଥିଲେ, "ମୁଁ ଶିଶୁମାନଙ୍କ ପ୍ରତି କୁପିତ ହେବି ନାହିଁ । ମୁଁ ମିଥ୍ୟା କଥା କହିବି ନାହିଁ । ମୋ ମନରେ କ୍ରୋଧ, ଅହଙ୍କାର ରହୁଛି ଏବଂ ମୁଁ ଧନର ଅପବ୍ୟୟ କରୁଛି । ମୋର ବିଶ୍ୱାସ, ଏସବୁରୁ ମୁକ୍ତି ପାଇବା ପାଇଁ ଧର୍ମହିଁ ମୋର ଏକମାତ୍ର ଆଶ୍ରୟ ।"

ଥରେ ନର୍ୱିଚ୍ ନଗରରେ କୌଣସି ପ୍ରସିଦ୍ଧ ଧର୍ମପ୍ରଚାରକ ବକ୍ତୃତା କରିବାର ବ୍ୟବସ୍ଥା ହେଲା । ଏଲିଜାବେଥ୍ ଓ ତାଙ୍କର ଭଉଣୀମାନେ ସଜବାଜ ହୋଇ ବକ୍ତୃତା ଶୁଣିବାକୁ ଗଲେ । ଫେରିଲାବେଳେ ଗାଡ଼ିରେ ଏଲିଜାବେଥ୍‌ଙ୍କୁ କହିଁ କହିଁ ହୋଇ କାନ୍ଦିବାର ଦେଖାଗଲା । ଭଉଣୀମାନେ ପଚାରିବାରୁ ସେ କହିଲେ, "ମୁଁ ବକ୍ତୃତା ଶୁଣି ଆଜ ଜାଣିପାରୁଛି ଯେ, ଈଶ୍ୱର ଅଛନ୍ତି । ମୁଁ ଆଗରୁ ତାହା ବୁଝି ନ ଥିଲି ।"

ସେହିଦିନଠାରୁ ଏଲିଜାବେଥ୍ ଦେଖିଲେ ଯେ, ଅନ୍ୟ ଭଉଣୀମାନଙ୍କ ପରି ଜୀବନଯାପନ କରିବା ତାଙ୍କ ପକ୍ଷରେ ଅସମ୍ଭବ । ସେ ସ୍ଥିର କଲେ ଯେ, ତାଙ୍କ ଜୀବନ ଦୀନଦୁଃଖୀଙ୍କ ସେବାରେ ନିୟୋଜିତ କରିବେ । ତାଙ୍କର ଆଉ ଆମୋଦ-ପ୍ରମୋଦରେ ମନ ଲାଗିଲା ନାହିଁ । ସେ ସମୟ କଟାଇବା ପାଇଁ ନିଜ ଗାଁରେ ଦୁଃଖୀ ପିଲାମାନଙ୍କ ଲାଗି ଗୋଟିଏ ବିଦ୍ୟାଳୟ ଖୋଲି ସେମାନଙ୍କୁ ବିଦ୍ୟାଶିକ୍ଷା ଦେଲେ । ସେ କାଳରେ ଇଂଲଣ୍ଡରେ ଗରିବ ପିଲାଙ୍କ ପାଇଁ ସ୍କୁଲ ନ ଥିଲା । କେବଳ ଧନୀ ଘରର ପିଲାମାନେ ପାଠ ପଢ଼ି ପାରୁଥିଲେ ।

ଏହି ସମୟରେ ଲଣ୍ଡନ ନିବାସୀ ଜୋଶେଫ୍ ଫ୍ରାଇ ନାମକ ଏକ ଧର୍ମପ୍ରାଣ ବଣିକଙ୍କ ସଙ୍ଗେ ଏଲିଜାବେଥ୍‌ଙ୍କର ବିବାହ

ହେଲା । ପ୍ରଥମେ ଏଲିଜା ବିବାହ କରିବାକୁ ଅମଙ୍ଗ ଥିଲେ । କିନ୍ତୁ ତାଙ୍କର ସ୍ୱାମୀ, ବିବାହ କଲେ ମଧ୍ୟ ସେ ଦରିଦ୍ରମାନଙ୍କର ସେବା କରିପାରିବେ, ଏହି ଆଶ୍ୱାସନା ଦେବାରୁ ଯାଇ ସେ ବିବାହ କଲେ । ବିବାହ କଲା ପରେ ଏଲିଜାବେଥ୍‌ଙ୍କୁ ନିଜ ଗାଁ ଛାଡ଼ି ସ୍ୱାମୀଙ୍କ ଲଣ୍ଡନସ୍ଥ ଗୃହରେ ବାସ କରିବାକୁ ପଡ଼ିଲା । ସ୍ୱାମୀଗୃହର ସମ୍ପଦ ଓ ସ୍ୱାଚ୍ଛନ୍ଦ୍ୟ ଭିତରେ ମଧ୍ୟ ସେ ଦୀନ-ଦରିଦ୍ରମାନଙ୍କ କଥା ଭୁଲି ନ ଥିଲେ । ବହୁ ପୁତ୍ରକନ୍ୟାର ଜନନୀ ହୋଇ ମଧ୍ୟ ସେ ଲଣ୍ଡନର ଭିନ୍ନ ଭିନ୍ନ ଅଜ୍ଞାତ ଗଳିରେ ବୁଲି ଦୁଃଖୀ-ଭିକାରି-ଲକ୍ଷ୍ମୀଛଡ଼ାମାନଙ୍କର ସେବାଶୁଶ୍ରୂଷା କରିବାକୁ ସମୟ ପାଉଥିଲେ । ଦୀନମାନଙ୍କ ସେବାପାଇଁ ସେ ନିଜ ଗୃହ ନିକଟରେ ଗୋଟିଏ ଛତ୍ର ଖୋଲି ଦେଇଥିଲେ । ସେଠାରେ ଭୋକିଲା ଭିକାରିମାନେ ବିନା ବ୍ୟୟରେ ନିଜର କ୍ଷୁଧା ନିବୃତ୍ତି କରି ପାରୁଥିଲେ ।

ଏହିପରି ବ୍ୟସ୍ତ ଥିବା ସମୟରେ ଏଲିଜାବେଥ୍ ଦିନେ ତାଙ୍କର ବନ୍ଧୁମାନଙ୍କଠାରୁ ନିଉଗେଟ୍ ନାମକ ସ୍ଥାନରେ ଥିବା ସରକାରି କାରାଗାରରେ ବନ୍ଦୀମାନଙ୍କର ଘୋର ଦୁର୍ଦ୍ଦଶା କଥା ଶୁଣିପାରିଲେ । ସେ ସଙ୍ଗେ ସଙ୍ଗେ ସେଠାକୁ ଯାଇ ନିଜ ଆଖିରେ ସେହି କରୁଣ-ଦୃଶ୍ୟ ଦେଖିଆସିଲେ । ସେ ଦେଖିଲେ ଯେ, କଏଦୀମାନଙ୍କୁ ଦୁଇଟା ଲମ୍ବା ବାଡ଼ ଆର ପଟେ ଠିଆ କରାହୋଇଛି । ସେମାନେ ସେହିସ୍ଥାନରୁ ଦୂରରୁ ଆସିଥିବା ବନ୍ଧୁବାନ୍ଧବ ବା ଭଦ୍ରଲୋକମାନଙ୍କ ସଙ୍ଗେ ଉଚ୍ଚ ପାଟିରେ ଚିତ୍କାର କରି କଥା କହୁଛନ୍ତି । ସେମାନଙ୍କର କୋଳାହଳ, ନିରାହାରରେ ଶୁଷ୍କ ମୁଖମଣ୍ଡଳ, ଛିନ୍ନମଳିନ ବାସ ଓ ଖାଦ୍ୟପାଇଁ ପରସ୍ପର

ମଧ୍ୟରେ ଠେଲାଠେଲି ଏବଂ ଡକରାଳ ଦେଖିଲେ, ଯେ କେହି ସେମାନଙ୍କୁ ମନୁଷ୍ୟଗୋଷ୍ଠୀ ନ କହି ପଶୁଗୋଷ୍ଠୀ କହିବ । ଏ ଦୃଶ୍ୟରେ ଏଲିଜାବେଥ୍‌ଙ୍କର ହୃଦୟ ତରଳିଗଲା । ସେ ଏହି ଦୀନମାନଙ୍କ ପାଇଁ କାମ କରିବାକୁ ମନସ୍ଥ କଲେ ।

ସେ ପ୍ରଥମେ ନ୍ୟୁଗେଟ୍ ଜେଲ୍‌ର ସ୍ତ୍ରୀ-ବିଭାଗରେ କାମ ଆରମ୍ଭ କଲେ । କାରାଧ୍ୟକ୍ଷଙ୍କ ଅନୁମତି ନେଇ ସେ ପ୍ରଥମେ ସ୍ତ୍ରୀ-ବନ୍ଦୀମାନଙ୍କ ସଙ୍ଗେ ପରିଚିତା ହେଲେ । ମାଆମାନଙ୍କ ସଙ୍ଗେ ଗ୍ଲେଟ୍ ଶିଶୁ ମଧ୍ୟ ଜେଲ୍‌ରେ ଥାଆନ୍ତି । ଏଲିଜାବେଥ୍ ଜେଲ୍‌ର ଗୋଟିଏ ଘରେ ଗୋଟିଏ ସ୍କୁଲ୍ ଖୋଲି ସେଠାରେ ଶିଶୁମାନଙ୍କୁ ଶିକ୍ଷାଦେବାକୁ ଆରମ୍ଭ କଲେ । ସେ ତାଙ୍କର ବାନ୍ଧବୀମାନଙ୍କୁ ଅନୁରୋଧ କରି ବସ୍ତ୍ରହୀନାମାନଙ୍କ ଲାଗି ବସ୍ତ୍ରର ଯୋଗାଡ଼ କରାଇଦେଲେ ଏବଂ ପ୍ରାଣଦଣ୍ଡ ପାଇଥିବା ନାରୀ ବନ୍ଦୀମାନଙ୍କୁ ନାନାଭାବରେ ସାନ୍ତ୍ୱନା ଦେବାକୁ ଲାଗିଲେ ।

ଏଲିଜାବେଥ୍ ଯେତେବେଳେ ଦେଖିଲେ ଯେ ସ୍ତ୍ରୀ-ବନ୍ଦୀ-ମାନେ ତାଙ୍କୁ ବିଶ୍ୱାସ କରୁଛନ୍ତି, ସେ ଧନେ ସେମାନଙ୍କୁ ଏକାଠି କରି କହିଲେ, ଯଦି ସେମାନେ ତାଙ୍କ କଥା ମାନିବେ, ତେବେ ସେମାନଙ୍କ ଲାଗି ଏପରି କାମ ଯୋଗାଇଦେବେ, ଯାହାଦ୍ୱାରା ସେମାନେ କିଛି କିଛି ରୋଜଗାର କରିପାରିବେ । ସେମାନେ ଆଉ ମଦ୍ୟପାନ କରିବେ ନାହିଁ, ଜୁଆ ଖେଳିବେ ନାହିଁ, ଅଭଦ୍ର ଗାଳି ଦିଆଦେଇ ହେବେ ନାହିଁ ଏବଂ କଜିଆ ଲଗାଇବେ ନାହିଁ । ସେମାନଙ୍କୁ ଭାଗ ଭାଗ କରି ଦିଆଯିବ ଏବଂ ପ୍ରତି ଭାଗ ଜଣେ ମନିଟର ଅଧୀନରେ ରହି କାର୍ଯ୍ୟ କରିବେ । ସେମାନେ ନିଜ ନିଜର ଦେହ ଓ ଲୁଗାପଟା ସଫା ରଖିବେ ।

ଦିନରେ ଦୁଇ ଥର ସେମାନେ ଏକାଠି ବସି ଧର୍ମଶାସ୍ତ୍ର ଶୁଣିବେ । ଏସବୁ ନିୟମ ମାନିଲେ ଏଲିଜାବେଥ୍ ତାଙ୍କ ଦ୍ୱାରା ପୋଷାକ ସିଲେଇ କରି ଓ ବୁଣେଇ ବେପାରିମାନଙ୍କ ନିକଟରେ ବିକ୍ରୀ କରେଇଦେବେ ଏବଂ ତାହାଦ୍ୱାରା ସେମାନେ ନିଜ ନିଜର ଖାଦ୍ୟ ଯୋଗାଡ଼ କରିବା ସଙ୍ଗେ ସଙ୍ଗେ, ଜେଲ୍‌ରୁ ଖଲାସ ହେଲାବେଳେ ମଧ୍ୟ ହାତରେ କିଛି ପଇସା ଧରି ଯିବେ । ସ୍ତ୍ରୀ କଏଦୀମାନେ ଏ ପ୍ରସ୍ତାବରେ ସାଙ୍ଗେ ସାଙ୍ଗେ ହଁ ଭରିଲେ ଏବଂ ଅଳ୍ପ କେତେଦିନ ମଧ୍ୟରେ ନିଉଗେଟ୍ ଜେଲର ସ୍ତ୍ରୀ-ବିଭାଗରୁ ସମସ୍ତ ପାଶବିକତା ଦୂରୀଭୂତ ହୋଇଗଲା ।

କାରାଗାରର କର୍ତ୍ତୃପକ୍ଷ ଯେତେବେଳେ ଦେଖିଲେ ଯେ, ଅଜ୍ଞାତରେ ସେମାନେ ଯାହାଙ୍କୁ କ୍ରୂର, ଅସଭ୍ୟ, ଅପରାଧୀ ବୋଲି ମନେ କରୁଥିଲେ, ସେମାନଙ୍କୁ ଶ୍ରୀମତୀ ଏଲିଜାବେଥ୍ ଅଳ୍ପଦିନ ମଧ୍ୟରେ ଭଦ୍ର ମନୁଷ୍ୟ କରିପାରିଛନ୍ତି, ସେମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେମାନେ ସେମାନଙ୍କର ପୂର୍ବ ବ୍ୟବସ୍ଥା ଲାଗି ଲଜ୍ଜିତ ହେଲେ ଏବଂ କାରାଗାର-ଶାସନରେ ଏଲିଜାବେଥ୍‌ଙ୍କ ପରାମର୍ଶ ନେବାକୁ ବସିଲେ । ଏଲିଜାବେଥ୍ ସେମାନଙ୍କୁ କହିଲେ ଯେ, ଜେଲ୍ କେବଳ ଦଣ୍ଡ ବା ପ୍ରତିହିଂସାର ସ୍ଥାନ ହେବା ଉଚିତ ନୁହେଁ । ଏହା ଶିକ୍ଷା ଓ ସଂଶୋଧନର ସ୍ଥାନ ହେବା ଉଚିତ । କଏଦୀମାନେ ଯେପରି ଉପଯୁକ୍ତ ଖାଦ୍ୟ ଓ ବସ୍ତ୍ର ପାଇବେ, ତାର ବନ୍ଦୋବସ୍ତ ହେବା ଉଚିତ ଏବଂ କର୍ତ୍ତୃପକ୍ଷ ଦେଖିବେ ଯେ ସେମାନେ ଯେପରି ଉପଯୁକ୍ତ କର୍ମରେ ନିଯୁକ୍ତ ହୁଅନ୍ତି ।

ଶ୍ରୀମତୀ ଏଲିଜାବେଥ୍‌ଙ୍କ କାର୍ଯ୍ୟ-କଳାପ ଦେଶରେ ଗୁରିଆଡ଼େ ପ୍ରଚୁର ହେବାରୁ ପାର୍ଲିଆମେଣ୍ଟ ମହାସଭା ଦେଶର କାରାଗାର-

ମାନଙ୍କର ସମସ୍ତ ବ୍ୟବସ୍ଥା ବଦଳାଇବାକୁ ଏକ ସମିତି ଗଠନ କଲେ । ଏହି ସମିତି ଏଲିଜାବେଥ୍‌ଙ୍କର ପରାମର୍ଶ ଅନୁସାରେ ଗଠିତ ହୋଇଥିଲା ଏବଂ ଅଳ୍ପକାଳ ମଧ୍ୟରେ କଏଦୀ-ଜୀବନର ନବଯୁଗ ଆରମ୍ଭ ହେଲା ।

କ୍ରମେ ଏଲିଜାବେଥ୍‌ଙ୍କର ସଂସ୍କାରପ୍ରଣାଳୀ ଇଂଲଣ୍ଡ ବାହାରେ ଫ୍ରାନ୍‌ସ, ଡେନମାର୍କ, ଜର୍ମାନୀ, ରୁଷିଆ ପ୍ରଭୃତି ୟୁରୋପର ଭିନ୍ନ ଭିନ୍ନ ଦେଶମାନଙ୍କରେ ମଧ୍ୟ ଗୃହୀତ ହେଲା । ସମଗ୍ର ସଭ୍ୟ-ଜଗତରେ ତାଙ୍କର ନାମ ସମ୍ମାନିତ ହେବାକୁ ଲାଗିଲା । ଥରେ ପ୍ରୁସିୟାର ରାଜା ଇଂଲଣ୍ଡକୁ ଆସିଥିଲେ । ସେ ବ୍ୟକ୍ତିଗତ ଭାବରେ ଏଲିଜାବେଥ୍‌ଙ୍କୁ ଦେଖା କରିବାକୁ ଯାଇଥିଲେ ।

ଏଲିଜାବେଥ୍ ଯେ କେବଳ କଏଦୀମାନଙ୍କର ସେବା କରୁଥିଲେ ତାହା ନୁହେଁ, ଯେଉଁଠି ଯେତେପ୍ରକାର ଦୁଃଖ, ଅନ୍ୟାୟ ତାଙ୍କ ଆଖିରେ ପଡ଼ୁଥିଲା, ସେ ସେଠି ସେତେପ୍ରକାରେ ନିଜକୁ ନିୟୋଜିତ କରିଥିଲେ । ଦେଶର ଅନେକ ସେବାନୁଷ୍ଠାନର ସେ ପ୍ରାଣସ୍ୱରୂପ ଥିଲେ ।

ଶ୍ରୀମତୀ ଏଲିଜାବେଥ୍ ଦୀର୍ଘ ଜୀବନ ଭୋଗ କରିଥିଲେ । ସ୍ୱାମୀଙ୍କ ବ୍ୟବସାୟରେ କ୍ଷତି, ସନ୍ତାନସନ୍ତତିମାନଙ୍କର ମୃତ୍ୟୁ ପ୍ରଭୃତି ବହୁ ଦୁଃଖ ମଧ୍ୟ ଦେଇ ତାଙ୍କୁ କାଳ କାଟିବାକୁ ପଡ଼ିଥିଲା । କିନ୍ତୁ ନିଜର ଦୁଃଖ ଭିତରେ ସେ କେବେହେଲେ ପରର ଦୁଃଖ ଓ ସେବାକୁ ଭୁଲିଯାଇ ନ ଥିଲେ । ପରସେବାରୂପ ପୁଣ୍ୟକର୍ମ କରି ଶ୍ରୀମତୀ ଏଲିଜାବେଥ୍ ଈଶ୍ୱରଙ୍କ ନାମ ଗାଇ ଗାଇ ୧୮୪୫ ଖ୍ରୀଷ୍ଟାବ୍ଦରେ ଇହଧାମ ତ୍ୟାଗ କରିଥିଲେ ।

## ପ୍ରଶ୍ନ

୧ । ପୂର୍ବେ କାରାଗାରମାନଙ୍କରେ ବନ୍ଦୀମାନଙ୍କପାଇଁ କି ପ୍ରକାର ବ୍ୟବସ୍ଥା ଥିଲା ?

୨ । ଏଲିଜାବେଥ୍ ଫ୍ରାଇ କିଏ ଏବଂ ସେ କିପରି କାରାଗାରରେ ସୁବ୍ୟବସ୍ଥା କରିଥିଲେ ?

୩ । ପାଦ୍ରୀଙ୍କଠାରୁ ବକ୍ତୃତା ଶୁଣି ତାଙ୍କର କି ମାନସିକ ପରିବର୍ତ୍ତନ ହୋଇଥିଲା ଏବଂ ପରେ ସେ କିପରି ପରୋପକାରରେ ମନୋନିବେଶ କରିଥିଲେ ?

୪ । ଲିଙ୍ଗ ପରିବର୍ତ୍ତନ କର:—ବନ୍ଦୀ, ଦୟାବତୀ, ଧର୍ମପ୍ରାଣା, କାରାଧ୍ୟକ୍ଷ ।

୫ । ନିମ୍ନଲିଖିତ ଶବ୍ଦମାନଙ୍କର ଅର୍ଥ ଲେଖି ସେମାନଙ୍କୁ ବାକ୍ୟରେ ପ୍ରକାଶ କର:—ସ୍ୱତନ୍ତ୍ର, ଦୁର୍ଦ୍ଦଶା, ଅମାନୁଷିକ, ବାନ୍ଧବୀ, କର୍ତ୍ତୃପକ୍ଷ ।

---

# ପଲ୍ଲୀ ଜୀବନ

ପଲ୍ଲୀବାସୀମାନେ ଆମୋଦପ୍ରମୋଦ ଲାଗି ନଗରକୁ ଆସନ୍ତି । ନଗର ଅଟ୍ଟାଳିକାଶ୍ରେଣୀ, ଅସଂଖ୍ୟ ବିବିଧ ଯାନବାହନମାନଙ୍କର ଗମନାଗମନ, ସୁବେଶ ନାଗରିକମାନଙ୍କର କର୍ମବ୍ୟସ୍ତତା, ସୁସଜ୍ଜିତ ବିପଣିରାଜି ଦେଖି ପଲ୍ଲୀବାସୀ ମୁଗ୍ଧ ଓ ଚକିତ ହୁଅନ୍ତି । ନଗରରେ ମାନବଜୀବନର ଯେଉଁ ସ୍ଫୂର୍ତ୍ତିମୟ ଚଞ୍ଚଳତା ଦେଖାଯାଏ, ପଲ୍ଲୀରେ ତାହା ନାହିଁ । ପଲ୍ଲୀରେ ସଂସାରର ଗତି ଅତି ଶିଥିଳ ।

କିନ୍ତୁ ନଗରରେ ଅଧିକ କାଳ କଟାଇଲେ ଲୋକର ପ୍ରାଣ ପଲ୍ଲୀର ଶାନ୍ତିମୟ କୋଳପ୍ରତି ଆକୃଷ୍ଟ ହୁଏ । କାରଣ ନଗର-ଜୀବନ କୋଳାହଳମୟ, ମମତାହୀନ ଓ ଅସ୍ୱାସ୍ଥ୍ୟକର ଏବଂ ନଗରର ଆନନ୍ଦ କୃତ୍ରିମ । ପଲ୍ଲୀର ଜୀବନ ମନ୍ଦଗତି; କିନ୍ତୁ ତାହା ସରସ ଓ ସ୍ୱାଭାବିକ । ପଲ୍ଲୀ ଯେଉଁ ଆନନ୍ଦ ଦାନ କରେ, ତାହା ନିର୍ମଳ ଓ ସ୍ୱାସ୍ଥ୍ୟକର ।

ୟୁରୋପୀୟ ସଭ୍ୟତା ଏ ଦେଶରେ ପଶିଲା ପରେ ଏ ଦେଶର ପଲ୍ଲୀସମୂହ କ୍ରମଶଃ ଜନହୀନ ଓ ଆନନ୍ଦହୀନ ହୋଇ ପଡ଼ୁଛି । ସହର ପଲ୍ଲୀର ରକ୍ତ ଶୋଷି ମୋଟା ହେଉଛି । ବ୍ୟାଧିଗ୍ରସ୍ତ, ଦରିଦ୍ର, ମଳିନ ପଲ୍ଲୀକୁ ଏ କାଳର ଭଦ୍ର ଶିକ୍ଷିତ ଲୋକେ ଆଉ ପସନ୍ଦ କରୁନାହାନ୍ତି । ଏବେ ଯାହାର ଅର୍ଥ-ପ୍ରାଚୁର୍ଯ୍ୟ ହେଲା, ସେ ସହରରେ ଖଣ୍ଡିଏ କୋଠା କରି ରହିବାକୁ ସୌଭାଗ୍ୟ ମନେକରୁଛି । ପଲ୍ଲୀରେ ଥିବା ପୂର୍ବକାଳର ଘରସବୁ ଏବେ ଭାଙ୍ଗି ଉଜୁଡ଼ି ହୋଇଯାଉଛି ।

କିନ୍ତୁ ଯେଉଁ ୟୁରୋପରୁ ଏହି ନଗର-ପ୍ରେମ ଏ ଦେଶକୁ ଆସିଛି, ସେଠାରେ ଏବେ 'ପଲ୍ଲୀକୁ ଫେର' ବୋଲି ଚିତ୍କାର ବରାବର ଶୁଭୁଛି । ସେଠାରେ ଯେଉଁମାନେ ବାଧ୍ୟହୋଇ ନଗରରେ କର୍ମ-ସୂତ୍ରରେ ରହୁଛନ୍ତି, ସେମାନେ ପ୍ରତି ସପ୍ତାହରେ ଦିନେ ଦୁଇ ଦିନ ପଲ୍ଲୀର ଶାନ୍ତ ଶ୍ୟାମଳ ଭୂମିରେ ବୁଲାବୁଲି କରି ତାର ସ୍ୱାସ୍ଥ୍ୟକର ନିର୍ମଳ ବାୟୁ ଗ୍ରହଣ କରି ନ ଆସିଲେ ସେମାନଙ୍କର ମନରେ ଶାନ୍ତି ନାହିଁ । ବସ୍ତୁତଃ ପଲ୍ଲୀଭ୍ରମଣ ସମଗ୍ର ୟୁରୋପ ମହାଦେଶରେ ନାଗରିକମାନଙ୍କର ଏକ ନିଶା ହୋଇ ଉଠିଛି । ଛୁଟି ପାଇଲେ କର୍ମଠ ବ୍ୟକ୍ତିମାନେ ପଲ୍ଲୀ-ପ୍ରକୃତି-କୋଳକୁ ବିଶ୍ରାମ ପାଇଁ

ଧାଇଁଯାଏ । ହୁଏତ ୟୁରୋପର ଏହି ନିଶା ଆମ ଦେଶକୁ ବି ଦିନେ ଆସିବ । କାରଣ ଆମ ଦେଶର ଏବକାଳର ଶିକ୍ଷିତମାନେ, ୟୁରୋପୀୟମାନେ ଯାହା କରିବେ, ତାହା କରିବାକୁ ହିଁ ସଭ୍ୟତା ବୋଲି ମନେ କରନ୍ତି ।

ଯେଉଁମାନଙ୍କର ଆଖି ଅଛି, ପଲ୍ଲୀପ୍ରକୃତି ସେମାନଙ୍କ ଲାଗି ଯେ ଏକ ରଙ୍ଗାଳୟ ଖୋଲି ଦେଇଥାଏ, ଯହିଁରେ ଦିବାରାତ୍ର ଅଭିନୟ ଚାଲିଥାଏ । ଉନ୍ମୁକ୍ତ ନୀଳ ଆକାଶରେ ଦିବସର ଭିନ୍ନ ଭିନ୍ନ କାଳରେ ମେଘମାଳାର ବର୍ଣ୍ଣ କ୍ରୀଡ଼ା, ଉନ୍ମୁକ୍ତ କେଦାରମାନଙ୍କର ଶସ୍ୟ ଓ ବୃତ୍ତ-ବୃକ୍ଷମାନଙ୍କର ଚକ୍ରବାଳାବଲମ୍ବୀ ଚିତ୍ରପଟ, ବୃକ୍ଷ-ଲତାବଗୁଣ୍ଠିତା କ୍ଷୁଦ୍ର ସ୍ରୋତସ୍ୱତୀର ଅବିଶ୍ରାନ୍ତ ସଲଜ୍ଜ ମଧୁର ଗତି, ଗ୍ରାମର ପୁଷ୍କରିଣୀମାନଙ୍କରେ ପଦ୍ମ ଓ କୁମୁଦର ତାରକାବନ୍ଦିତ ଶୋଭା, ଗ୍ରାମର ବାଳକ ବାଳିକାମାନଙ୍କର ସ୍ୱାଧୀନ ବିହାର ଓ କାହିଁ କାହିଁ ଗୀତଗାନ, ପୁରୁଷମାନଙ୍କର କୃଷିକ୍ଷେତ୍ରକୁ ଓ ସୀମନ୍ତିନୀମାନଙ୍କର ଜଳଘାଟକୁ ଗମନ—ଏ ସମସ୍ତ ମିଶାଇ ପଲ୍ଲୀଦର୍ଶକ ଆଗରେ ଏକ ମନୋହର ଅନନ୍ୟ-ଦୁଷ୍ପ୍ରାପ୍ୟ ଅଭିନବ ଚିତ୍ର ଉପସ୍ଥାପିତ କରେ । ଏ ସବୁରେ ନଗରର କୃତ୍ରିମ ଚାକଚକ୍ୟ ବା ଉତ୍ତେଜକତା ନାହିଁ । ଏ ସମସ୍ତର ଗତି ମନ୍ଥର; କିନ୍ତୁ ଏସବୁ ମନୁଷ୍ୟର ମନ ଓ ଦେହ ଉପରେ ଜନନୀର କଲ୍ୟାଣକର ହସ୍ତର ସ୍ପର୍ଶ ପରି କାର୍ଯ୍ୟ କରେ । ନଗରର ସ୍ପର୍ଶରେ ମମତା ଓ ସ୍ୱାଭାବିକତାର ଅଭାବ ଲକ୍ଷିତ ହୁଏ ।

ସହରରେ ଅନେକ ହୋଟେଲ୍ ଅଛି । ସେସବୁରେ ନାଗରିକମାନଙ୍କର ରସନାଲାଳସା ତୃପ୍ତି କରିବାପାଇଁ ବହୁବିଧ

ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ ହୁଏ । କିନ୍ତୁ ପଲ୍ଲୀରେ ଗାଈଆଳ ପିଲେ ଗୁହାଳ ଭେଦା କରି, ନଈରୁ ମାଛ ଧରି ଆଣି ଏବଂ ବାଡ଼ିମାନଙ୍କରୁ ପନିପରିବା ନେଇଆସି, ଯେଉଁ ବଣଭୋଜି କରି ମଝିରେ ମଝିରେ ଖାଆନ୍ତି, ତାହାର ଶାନ୍ତି-ମାଧୁରୀ ଓ ପରିତୋଷ, ନଗରର ହୋଟେଲମାନଙ୍କରେମିଳିବ ନାହିଁ । ନଗରରେ ଗ୍ରୀଷ୍ମତାପନିବାରଣ-ପାଇଁ ବୈଦ୍ୟୁତିକ ପଙ୍ଖାର ବ୍ୟବସ୍ଥା ଅଛି । କିନ୍ତୁ ଖରାଦିନେ ପଲ୍ଲୀର କୋକିଳକୂଜିତ, କଣ୍ଟଳଯୁ-କୁସୁମ-ସୁରଭିତ ସୁଶୀତଳଛାୟା, ଆମ୍ର କୁଞ୍ଜର ଶାନ୍ତି ଓ ଆରାମ ବୈଦ୍ୟୁତିକ ପଙ୍ଖା ଦେଇ ପାରିବ କି ? ଏହିପରି ଦରିଦ୍ର ନିରାଡ଼ମ୍ବର ପଲ୍ଲୀ ମନୁଷ୍ୟର ସୁଖ ଓ ଆରାମ ପାଇଁ ଯାହା ସ୍ୱାଭାବିକ ଭାବରେ ସାଇତି ରଖିଥାଏ, ସହରରେ ଅଜସ୍ର ଅର୍ଥବ୍ୟୟରେ ତାହାର ସତ୍ତ୍ୱ ସୁଦ୍ଧା ମିଳିବନାହିଁ । ପୁଣି ପଲ୍ଲୀକୁ ଯେତେ ତାଚ୍ଛଲ୍ୟ କରି ପଛକେ, ମନେରଖିବା ଉଚିତ ଯେ, ସହରର ବିଳାସସାମଗ୍ରୀ କେବଳ ନୁହେଁ, ସହରବାସୀଙ୍କର ଭରଣପୋଷଣ ସାମଗ୍ରୀସବୁ ମଧ୍ୟ ପଲ୍ଲୀ-ମା'ର ଗନ୍ତାଘରୁ ଆସେ । ପଲ୍ଲୀ ନ ଥିଲେ ସହରର ଅସ୍ତିତ୍ୱ ଜଗତରେ ନ ଥାନ୍ତା ।

।

ପ୍ରକୃତିର କୋଳରେ ଅବସ୍ଥିତ ଥିବାରୁ ପଲ୍ଲୀଜୀବନରେ ପ୍ରକୃତିର ସମ୍ପର୍କ ନଗର ଜୀବନ ଅପେକ୍ଷା ଘନତର ବୋଧହୁଏ । ସହରରେ ତ ଋତୁମାନଙ୍କର ଆଗମନ ଓ ତିରୋଧାନ ସହରବାସୀଏ ବୋଧ କରନ୍ତି ନାହିଁ । ଇଟାପଥରର କାରାଗାରମାନଙ୍କରେ ରହି ସହରରେ ମନୁଷ୍ୟର ପ୍ରାଣ ଏପରି କୃତ୍ରିମ ହୋଇ ଉଠେ ଯେ, ପ୍ରକୃତିର ଉପହାରମାନଙ୍କ ଲାଗି ତାହାର ଆଗ୍ରହ ମଧ୍ୟ କମିଯାଏ । କିନ୍ତୁ ପଲ୍ଲୀଜୀବନରେ ପ୍ରତ୍ୟେକ ଋତୁ ତାର ସ୍ୱାଗତ ଓ ସମ୍ବର୍ଦ୍ଧନା

ପଲ୍ଲୀବାସୀଠାରୁ ନ ନେଇ ଯାଏ ନାହିଁ । ପ୍ରତି ଋତୁ ଅନୁଯାୟୀ ଆମ୍ଭମାନଙ୍କର ଉତ୍ସବାଦି ଖଞ୍ଜା ଅଛି । ଏହି ଉତ୍ସବସବୁ ପଲ୍ଲୀ ନିଷ୍ଠା ସହକାରେ ପାଳନ କରେ ଏବଂ ସେହି ଉତ୍ସବ ପାଳନ ସଙ୍ଗେ ପଲ୍ଲୀ ଋତୁମାନଙ୍କର ପୂଜାକରେ । ଗ୍ରୀଷ୍ମରେ ପଣାସଂକ୍ରାନ୍ତି ଓ ସାବିତ୍ରୀ ବ୍ରତ ଉପବାସ, ଶରତରେ ଖୁଦୁରୁକୁଣି; ମହାଳୟା ଓ ଦଶହରା; ହେମନ୍ତରେ ନବାନ୍ନ, କାଞ୍ଜିଅଁଳା ଓ ଦୀପାବଳୀ; ଶୀତରେ ଶ୍ରୀପଞ୍ଚମୀ ଓ ଶାମ୍ବଦଶମୀ; ବସନ୍ତରେ ଦୋଳୋତ୍ସବ— ଏସବୁ କିପରି ଭିନ୍ନ ଭିନ୍ନ ଋତୁର ଚରିତ୍ରକୁ ନେଇ ବ୍ୟବସ୍ଥା କରାଯାଇଛି ଏବଂ ଏ ସବୁ ପାଳନ କରି ପଲ୍ଲୀବାସୀ କିପରି ଭିନ୍ନ ଭିନ୍ନ ଋତୁମାନଙ୍କୁ ଉପଭୋଗ କରନ୍ତି, ତାହା ଠିକଏ ଚିନ୍ତାକଲେ ବୁଝାଯିବ ।

ଦୈନନ୍ଦିନ ଜୀବନରେ ମଧ୍ୟ ପଲ୍ଲୀଜୀବନ ପ୍ରକୃତିର ଗତି ସଙ୍ଗେ ତାଳ ରଖି ଚାଲେ । ପଲ୍ଲୀରେ ଘଣ୍ଟା ନ ଥାଏ । ପଲ୍ଲୀ-ବାସୀର ଦିନରେ ସୂର୍ଯ୍ୟ ଓ ରାତିରେ ତାରକା କାଳଜ୍ଞାପକର କାର୍ଯ୍ୟ କରନ୍ତି । ପ୍ରଭାତ-ସୂର୍ଯ୍ୟ ରାତ୍ରିର ଅନ୍ଧକାରକୁ ତଡ଼ିଲାପରେ ପଲ୍ଲୀଗୃହିଣୀ ଘରଦ୍ୱାର ସଫାକରି ଗୋମୟ ଜଳ ସିଞ୍ଚିବାଦ୍ୱାରା ବାହାର ଆବର୍ଜନା ଦୂର କରି ଶୁଦ୍ଧ ଭାବରେ ତାର ଦିନଟି ଆରମ୍ଭ କରେ । ସୂର୍ଯ୍ୟକିରଣ ନ ପଡ଼ୁଣୁ ଆକାଶରେ ତାରକା ସବୁ ଲୁଚିଗଲାପରେ ଗୃହବଧୂଗୁଡ଼ିକ ପାହାନ୍ତାରୁ ନିତ୍ୟକୃତ୍ୟ ସାରି ଲୋକଲୋଚନରୁ ନିଜକୁ ରକ୍ଷା କରିଥାନ୍ତି । ଦିନ ବଢ଼ିଲା କ୍ରମେ ମନ୍ଦଗତିରେ ପଲ୍ଲୀର ଦୈନନ୍ଦିନ ଜୀବନ ଚାଲେ । ଗାଈ ଚରିବାକୁ ଯାଆନ୍ତି, ବଳଦ ହଳକୁ ଯାଏ । ଖରା ଅସହ୍ୟ ହେବାଉ ସେମାନଙ୍କୁ ଘରକୁ ଫେରିବାକୁ ସଙ୍କେତ ଦେଲେ ଯାଇ ସେମାନେ ଫେରନ୍ତି ଏବଂ

ମଧ୍ୟାହ୍ନଭୋଜନ କରି ବିଶ୍ରାମ କରନ୍ତି । ତା'ପରେ ଖେଳ ମଉଳା ଆସେ । ପ୍ରକୃତି ସଙ୍କେତ ଦିଏ ପୁଣି କାମକୁ ଯିବାକୁ । ସେମାନେ ତତ୍ପର ହୋଇ ଉଠନ୍ତି । ସନ୍ଧ୍ୟା ଆସେ । ଆକାଶରେ ତାରାର ସଙ୍କେତ ଦେଖି ଘରେ ଗୃହିଣୀମାନେ ସଞ୍ଜଦୀପ ଲଗାଇ ଦିଅନ୍ତି । ଧେନୁପଲ ଘରକୁ ଫେରନ୍ତି । ଲୋକେ ବିଲରୁ ଫେରନ୍ତି ଏବଂ ଧୁଆଧୋଇ ହୋଇ ପିଣ୍ଡାରେ ବସି ଟିକିଏ ଗପ କରନ୍ତି । ଦିନଯାକର କଠୋର ପରିଶ୍ରମ ପରେ ସେ ବିଶ୍ରାମ ଓ ଗଳ୍ପବିଳାସ ନିହାତି ଲୋଡ଼ା । ଏହି ସମୟରେ ଗ୍ରାମ୍ୟ ଦେଉଳରେ ଘଣ୍ଟା ବାଜି ଉଠେ । ଗ୍ରାମର ଦେବପୂଜକ ଜଣାଇ ଦିଅନ୍ତି ଯେ, ଏହି ଅବସର ବେଳେ ଅନ୍ୟାନ୍ୟ ଚିନ୍ତା ମଧ୍ୟରେ ଜୀବନଦାତା ବିଧାତାଙ୍କୁ ସ୍ମରଣ କର । ସମସ୍ତେ ସେହି ବିଧାତାଙ୍କୁ ନମସ୍କାର କରନ୍ତି । ପଲ୍ଲୀ ତ ଆଜି ଜନଶୂନ୍ୟ ଓ ଶ୍ରୀହୀନ । ତଥାପି ଗ୍ରାମର ଦେବତା ପୁରୁଷ ପୁରୁଷ ଧରି ବିରାଜୁଛନ୍ତି । ପଲ୍ଲୀବାସୀ ପ୍ରାଚୀନର ଭକ୍ତ । ସେ ଗ୍ରାମ୍ୟ-ଦେବତାଙ୍କୁ ନମସ୍କାର କଲାବେଳେ ଇତିହାସକୁ ନମସ୍କାର କରେ ।

## ପ୍ରଶ୍ନ

( କ )

୧ । ନାଗରିକ ଅପେକ୍ଷା ପଲ୍ଲୀବାସୀଙ୍କଠାରେ କି ବିଶେଷ ଭାବ ଲକ୍ଷିତ ହୁଏ ?

୨ । ପଲ୍ଲୀର ଦୈନନ୍ଦିନ ଜୀବନ କିପରି କଟେ, ଏ ବିଷୟରେ ଗୋଟିଏ ପ୍ରବନ୍ଧ ଲେଖ ।

୩ । ଜାତୀୟ ପର୍ବ-ପର୍ବାଣି, ମହୋତ୍ସବ ପ୍ରଭୃତି ପଲ୍ଲୀପ୍ରକୃତି ଅନୁସାରେ କିପରି ହୋଇଥାଏ, ଉଦାହରଣ ଦ୍ୱାରା ବୁଝାଅ ।

୪ । ତୁମ୍ଭେ ପଲ୍ଲୀବାସୀ କିମ୍ବା ନଗରବାସୀ ହେବାକୁ କି ଯୁକ୍ତି ଦେଖାଇବ ଲେଖ ।

( ଖ )

୧ । ଚକ୍ରବାଳାବଲମ୍ବୀ, ଉନ୍ମୁକ୍ତ ମେଘମାଳା, ତାରକାବନ୍ଦନମ, ଗନ୍ତାଘର, ସୁଶୀତଳଚ୍ଛାୟା, ଆମ୍ରକୁଞ୍ଜ, ରସନା-ଲାଳସା— ଏମାନଙ୍କର ସମାସ ବ୍ୟାଖ୍ୟା କର ।

୨ । ତୃପ୍ତି, ଅବସ୍ଥିତ, ଦରିଦ୍ର, ପରିତୋଷ, ସୀମନ୍ତ୍ରମ— ଏମାନଙ୍କର ପ୍ରକୃତି ପ୍ରତ୍ୟୟ ଲେଖ ।

୩ । କଣଳୟୁ, ନିହାତି, ଉପହାର, ଭରଣି, ଭେଦା—ଏମାନଙ୍କୁ ବ୍ୟବହାର କରି ବାକ୍ୟ ଲେଖ ।

---

## ବିହଙ୍ଗମ ଦେହ

ଜଗଦୀଶ୍ୱର ପକ୍ଷୀମାନଙ୍କର ଶରୀର-ନିର୍ମାଣରେ ଯେପରି କୌଶଳ ପ୍ରକାଶ କରିଅଛନ୍ତି, ତାହାର ଉପମା ନାହିଁ ! ସେମାନଙ୍କର ଯେଉଁ ଅବୟବର ବିଷୟ ବିବେଚନା କରି ଦେଖିବା, ସେଥିରେହିଁ ତାଙ୍କର ପରମ ନୈପୁଣ୍ୟ ପ୍ରତ୍ୟକ୍ଷ ହୁଏ । ସେମାନଙ୍କୁ ସତତ ବାୟୁସାଗରରେ ସନ୍ତରଣ କରିବାକୁ ହୁଏ; ଏଥିପାଇଁ ଜଗଦୀଶ୍ୱର ସେମାନଙ୍କ ଶରୀର ଖଣ୍ଡିଏ ତରଣୀ ରୂପେ ନିର୍ମାଣ କରିଅଛନ୍ତି । ସେମାନଙ୍କର ପକ୍ଷ ଆହୁଲା ସ୍ୱରୂପ, ପୁଚ୍ଛ କର୍ଣ୍ଣ ସ୍ୱରୂପ ଏବଂ ବକ୍ଷସ୍ଥଳ ନୌକାର ପୁରୋଭାଗ ସ୍ୱରୂପ ।

ଶରୀର ଭାରି ହେଲେ ସେମାନେ ଆକାଶରେ ଉଡ୍ଡୀୟମାନ ହୋଇପାରିବେ ନାହିଁ, ଏହି ବିବେଚନାରେ ସେ ସେମାନଙ୍କର ଅଙ୍ଗସମୂହ ଅତ୍ୟନ୍ତ ଲଘୁ ପଦାର୍ଥରେ ପ୍ରସ୍ତୁତ କରିଅଛନ୍ତି ଏବଂ ସେମାନେ ଯେପରି ଅକ୍ଲେଶରେ ବାୟୁ ଭେଦ କରିବାକୁ ସମର୍ଥ ହେବେ, ସେଥିପାଇଁ ସେମାନଙ୍କର ମସ୍ତକର ଅଗ୍ରଭାଗ ଅସ୍ଥୂଳ ଓ ଚଞ୍ଚୁପୁଟ ସୁତୀକ୍ଷ୍ଣ କରି ନିର୍ମାଣ କରିଅଛନ୍ତି ।

ପକ୍ଷୀମାନଙ୍କର ଚଞ୍ଚୁ ଗୋଟିଏ ବିଚିତ୍ର ବସ୍ତୁ । ଯେ ପକ୍ଷୀ ଯେପରି ଦ୍ରବ୍ୟ ଆହାର କରେ, ଜଗଦୀଶ୍ୱର ତାହାର ଚଞ୍ଚୁ ତଦୁପଯୋଗୀ କରିଦେଇ ଅଛନ୍ତି । ଶ୍ୟେନ, ଶକୁନି ପ୍ରଭୃତି ଯେଉଁସବୁ ପକ୍ଷୀ ଅନ୍ୟପ୍ରାଣୀର ଶରୀର ବିଦୀର୍ଣ୍ଣ କରି ଆହାର କରନ୍ତି ଓ ଶୁକ ସାରିକାଦି ଯେଉଁ ସମସ୍ତ ପକ୍ଷୀ ଶସ୍ୟ ଭଞ୍ଜନ ଓ ଫଳାଦି ଖଣ୍ଡନ କରି ଭକ୍ଷଣ କରନ୍ତି, ସେମାନଙ୍କର ଚଞ୍ଚୁ ଅତ୍ୟନ୍ତ କଠିନ କରିଦେଇ ଅଛନ୍ତି । କିନ୍ତୁ ହଂସ ସଦୃଶ ଯେଉଁସବୁ ପକ୍ଷୀ ପଙ୍କ ମଧ୍ୟରେ ଆହାର ଅନ୍ୱେଷଣ କରନ୍ତି, ସେମାନଙ୍କ ଚଞ୍ଚୁ କୋମଳ ଓ ଚେପ୍ଟା ଏବଂ ଏପରି କୌଶଳରେ ନିର୍ମିତ ଯେ, ତା ମଧ୍ୟରୁ ଜଳ ନିର୍ଗତ ହୋଇଯାଏ; କିନ୍ତୁ ଖାଦ୍ୟବସ୍ତୁ ବହିର୍ଗତ ହୁଏ ନାହିଁ ।

ମାଂସାଶୀ ପକ୍ଷୀମାନଙ୍କର ଚଞ୍ଚୁର ପାର୍ଶ୍ୱଦେଶ ତୀକ୍ଷ୍ଣ ଏବଂ ଅଗ୍ରଭାଗ ବଡ଼ଶିବତ୍ ବକ୍ରାକାର । ସେମାନେ ତଦ୍ଦ୍ୱାରା ମୃତ-ଜୀବର ଶରୀର ବିଦୀର୍ଣ୍ଣ ଓ ମାଂସାଦି ବିଚ୍ଛିନ୍ନ କରି ଭକ୍ଷଣ କରନ୍ତି । ପୁଣି ବକ ପ୍ରଭୃତି ଯେଉଁସବୁ ପକ୍ଷୀ ଜଳଜନ୍ତୁ ଧରି ଆହାର କରନ୍ତି, ସେମାନଙ୍କର ଚଞ୍ଚୁ କଠିନ, ତୀକ୍ଷ୍ଣ ଓ ଦୀର୍ଘାକାର । କିନ୍ତୁ ସେମାନଙ୍କୁ ନିହତ ଜୀବର ଶରୀରରୁ ମାଂସ ବିଚ୍ଛିନ୍ନ କରି ଭକ୍ଷଣ

କରିବାକୁ ହୁଏ ନାହିଁ ବୋଲି ସେମାନଙ୍କର ଚଞ୍ଚୁ ମଧ୍ୟ ଉଲ୍ଲିଖିତ ମାଂସଭୋଜୀ ବିହଙ୍ଗମାନଙ୍କର ଚଞ୍ଚୁପରି ବକ୍ରାକାର ନୁହେଁ ।

କପୋତ-ଚଟକାଦି ଶସ୍ୟଭୋଜୀ ପକ୍ଷୀମାନଙ୍କର ଚଞ୍ଚୁ କ୍ଷୁଦ୍ର ଓ ଈଷତ୍ ବକ୍ର; ତଦ୍ଦ୍ୱାରା ଶସ୍ୟକଣା ପରି କ୍ଷୁଦ କ୍ଷୁଦ୍ର ଭୋଜ୍ୟବସ୍ତୁ ସବୁ ସେମାନେ ଭୂମିରୁ ଅକ୍ଳେଶରେ ଥେକି ନେଇ ପାରନ୍ତି ।

ଏପରି ପୁଙ୍ଖାନୁପୁଙ୍ଖ ବିବେଚନା କରି ଦେଖିଲେ ଦେଖାଯାଏ, ପକ୍ଷୀମାନଙ୍କ ମଧ୍ୟରେ ଯେଉଁ ଜାତି ଯେପରି ଖାଦ୍ୟ ଭକ୍ଷଣ କରେ, ପରମେଶ୍ୱର ତାହାର ତଦୁପଯୋଗୀ ଚଞ୍ଚୁ ନିର୍ମାଣ କରି ଅଦ୍ଭୁତ ନିପୁଣତା ପ୍ରକାଶ କରିଅଛନ୍ତି । କୌଣସି ସ୍ଥଳରେ ଏ ନିୟମର ଅନ୍ୟଥା ଦେଖାଯାଏ ନାହିଁ; ଯେଉଁସ୍ଥାନରେ ଯେପରି ଆବଶ୍ୟକ, ଜଗଦୀଶ୍ୱର ସେ ସ୍ଥାନରେ ସେହିପରି କରିଅଛନ୍ତି ।

ସେ ସକଳପ୍ରାଣୀର ଗ୍ରାସାଚ୍ଛାଦନ ବିଷୟରେ ମଧ୍ୟ ଅସାଧାରଣ କୌଶଳ ପ୍ରଦର୍ଶନ କରିଅଛନ୍ତି; କିନ୍ତୁ ପକ୍ଷୀମାନଙ୍କର ଶରୀରର ଆଚ୍ଛାଦନରେ ଯେପରି ପରିପାଟୀ ଥାଏ, ଏପରି ବୋଧହୁଏ ଆଉ କୌଣସି ଜୀବର ନୁହେଁ । ଏହା ଯେପରି ଲଘୁ, ସେହିପରି ମସୃଣ, ପୁଣି ତଦନୁରୂପ ଶୀତନିବାରକ ଓ ଉଷ୍ଣତାସାଧକ । ଏହାର ବର୍ଣ୍ଣ ଓ ଶୋଭା ମଧ୍ୟ କିପରି ନୟନ ! ପର୍ଯ୍ୟଟକମାନେ ଅକସ୍ମାତ ଏକ ଏକ ବନବିହାରୀ ବିହଙ୍ଗମର ଅସାମାନ୍ୟ ସୌନ୍ଦର୍ଯ୍ୟ ଅବଲୋକନ କରି ମୋହିତ ହୋଇଯାନ୍ତି ।

ଗୋଟିଏ ଗୋଟିଏ ପର ଏକ ଏକ ଅସାମାନ୍ୟ ଶିଳ୍ପକାରୀ । ଏହାର ପୂର୍ବଭାଗ ଅର୍ଥାତ୍ ପୁଚ୍ଛଦେଶ ଯେପରି

ଲଘୁ ତଦନୁରୂପ ଦୃଢ଼ । ଲଘୁତା ଓ ଦୃଢ଼ତା—ଏହି ଉଭୟ ଗୁଣର ଏପରି ଏକତ୍ର ସମାବେଶ ଅନ୍ୟ କୌଣସି ପ୍ରାଣୀଠାରେ ଦୃଷ୍ଟ ହୁଏ ନାହିଁ । ଏହି ପୂର୍ବଭାଗ ଏବଂ ଅପର ଭାଗ ମଧ୍ୟ ଅତି ବିସ୍ମୟକର । ତାହା ଯେଉଁ ପଦାର୍ଥରେ ପ୍ରସ୍ତୁତ, ଭୂମଣ୍ଡଳରେ ଅନ୍ୟ କୌଣସି ପ୍ରାଣୀଠାରେ ବା ବସ୍ତୁରେ ତାହା ବିଦ୍ୟମାନ ନାହିଁ । ଏହା ଲଘୁ, କୋମଳ ଓ କମନୀୟ, ଅଥଚ ଦୃଢ଼ ଓ ଦୁର୍ଭେଦ୍ୟ । ଅତଏବ ଇଚ୍ଛାନୁସାରେ ସବୁଆଡ଼େ ନତ ଓ ଚାଳିତ କରାଯାଇ-ପାରେ । ପରଗୁଡ଼ିକ ଲଘୁ ହୋଇ ନ ଥିଲେ ପକ୍ଷୀମାନେ ଉଡ଼ିବାକୁ ସମର୍ଥ ହେବେ ନାହିଁ—ଏହି ବିବେଚନାରେ ପରମେଶ୍ୱର ସେଗୁଡ଼ିକୁ ଲଘୁ କରିଅଛନ୍ତି ଓ ସେଗୁଡ଼ିକ ଦୃଢ଼ ନ ହେଲେ ବାୟୁପ୍ରବାହ ଦ୍ୱାରା ଭାଙ୍ଗିଯିବେ, ଏ କାରଣରୁ ସେଗୁଡ଼ିକ ଦୃଢ଼ ଓ ଦୁର୍ଭେଦ୍ୟ କରିଅଛନ୍ତି । ବିଶ୍ୱପତି ବିହଙ୍ଗମ ଜାତିର ଶରୀରର ଲଘୁତା ଓ ଦୃଢ଼ତା ଏକତ୍ର ସଂସାଧନାର୍ଥ କେତେ ଯତ୍ନ କରି ନାହାନ୍ତି ! ଜଗତର ଅନ୍ୟ କୌଣସି ବସ୍ତୁ ବିଷୟରେ ଏହିପରି ବିବେଚନା କରାଗଲେ ସେଥିରେ ତାଙ୍କର ଅଦ୍ଭୁତ ନିର୍ମାଣକୌଶଳ ଓ ପ୍ରାଗାଢ଼ ଯତ୍ନର ଲକ୍ଷଣ ପ୍ରତୀୟମାନ ହୁଏ ।

## ପ୍ରଶ୍ନ

(କ)

୧ । ପକ୍ଷୀମାନଙ୍କର ଶରୀରକୁ ଖଣ୍ଡିଏ ତରଣୀ ସହିତ ତୁଳନା କରାଯାଇପାରେ କାହିଁକି

୨ । ବିଭିନ୍ନ ପକ୍ଷୀର ଚଞ୍ଚୁ ନିର୍ମାଣରେ କି ପ୍ରକାର ପାର୍ଥକ୍ୟ ଲକ୍ଷିତ ହୁଏ ? କାହିଁକି ବା ଏ ପାର୍ଥକ୍ୟ ଦେଖାଯାଏ ?

---

(ଶ୍ରୀ ଅକ୍ଷୟକୁମାର ଦତ୍ତଙ୍କ ବଙ୍ଗଳା ରଚନାରୁ ଅନୁବାଦିତ)

୩ । ଆହାର ଭେଦରେ ପକ୍ଷୀମାନଙ୍କୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କର ।

୪ । ପକ୍ଷୀସୃଷ୍ଟିରେ ଭଗବାନ କିପରି ବିଚିତ୍ର କୌଶଳ ଦେଖାଇ ଅଛନ୍ତି, ସେ ବିଷୟରେ ଅନ୍ୟୂନ ୧୫ ଧାଡ଼ି ମଧ୍ୟରେ ଗୋଟିଏ ରଚନା ଲେଖ ।

(ଖ)

୧ । ସନ୍ଧିବିଚ୍ଛେଦ କର—ଜଗଦୀଶ୍ୱର, ଦୁର୍ଭେଦ୍ୟ, ବହିର୍ଗତ, ତଦୁପଯୋଗୀ, ଅନ୍ୱେଷଣ, ଗ୍ରାସାଚ୍ଛାଦନ, ପୁରୋଭାଗ ।

୨ । ପକ୍ଷୀକୁ ବିହଙ୍ଗମ କାହିଁକି ବୋଲାଯାଏ ? ସେହି ଅର୍ଥରେ ଏହାକୁ ଅନ୍ୟ କେଉଁ ନାମରେ ଡକାଯାଇପାରେ ?

୩ । ତୃତୀୟ ଅନୁଚ୍ଛେଦରେ ଥିବା ବିଶେଷଣ ଓ କର୍ମପଦଗୁଡ଼ିକ ବାଛି ଦିଅ ।

୪ । ଅନ୍ୟଥା, ନିର୍ମିତ, ନିର୍ମାଣ, କ୍ଲେଶ, ଅସାମାନ୍ୟ ଓ ଦୃଢ଼— ପ୍ରତ୍ୟେକ ଶବ୍ଦକୁ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର ।

---

## ସାହସିକ କଲମ୍ବସ

ବର୍ତ୍ତମାନ ଆମେରିକା ପୃଥିବୀର ସଭ୍ୟତମ ଦେଶମାନଙ୍କ ମଧ୍ୟରେ ଗଣ୍ୟ । ବିଜ୍ଞାନ ଓ ଯନ୍ତ୍ର-ସଭ୍ୟତାର ଉନ୍ନତି ଆମେରିକାରେ ଯେପରି ହୋଇଅଛି, ଜଗତର ଅନ୍ୟ କୁତ୍ରାପି ତାହା ହୋଇନାହିଁ । ଗ୍ରାମଫୋନ, ସିନେମା, ବିଦ୍ୟୁତାଲୋକ ପ୍ରଭୃତି ବିଜ୍ଞାନର ଯେଉଁ ଯାଦୁକିଯ଼ା ସବୁ ଆମ୍ଭେମାନେ ଦେଖୁଁ, ସେସବୁ ଆମେରିକାବାସୀଙ୍କ ମସ୍ତିଷ୍କରୁ ଉଦ୍ଭୂତ । ଆମେରିକା ସ୍ୱର୍ଣ୍ଣ

ଲୌହ, କୋଇଲା ପ୍ରଭୃତି ପ୍ରାକୃତିକ ସମ୍ପଦରେ ମଧ୍ୟ ପରିପୂର୍ଣ୍ଣ; ତେଣୁ ଏହି ଦେଶ ପୃଥିବୀର ସବୁଠାରୁ ଧନୀ ଦେଶ ବୋଲି ଖ୍ୟାତ । ପୃଥିବୀର କୋଟିପତିମାନଙ୍କ ମଧ୍ୟରେ ଅଧିକାଂଶ ଆମେରିକାବାସୀ ।

କିନ୍ତୁ ଚାରିଶହ ବର୍ଷ ତଳେ ଆମେରିକା ବୋଲି ଗୋଟାଏ ଦେଶ ଯେ ଅଛି, ଏହା କେହି ଜାଣି ନ ଥିଲେ । ଏବେ ୟୁରୋପର ଲୋକେ ବାଷ୍ପୀୟ ଜାହାଜରେ ପୃଥିବୀର ସବୁଆଡ଼େ ମାଡ଼ି ଯାଉଛନ୍ତି; କିନ୍ତୁ ସେତେବେଳେ କେବଳ ପାଲଟଣା ଛୋଟ ଜାହାଜଥିଲା ଓ ୟୁରୋପୀୟମାନଙ୍କର ଭୌଗୋଳିକ ଜ୍ଞାନ ବର୍ତ୍ତମାନ ପରି ବିସ୍ତୃତ ଓ ପରିପକ୍ୱ ହୋଇ ନ ଥିଲା । ସେତେବେଳେ ୟୁରୋପୀୟମାନେ ପୃଥିବୀକୁ ଏକ ଚତୁଷ୍କୋଣ ବସ୍ତୁ ବୋଲି ଭାବୁଥିଲେ ଏବଂ ବେଶି ଦୂର ସମୁଦ୍ରକୁ ଚାଲିଗଲେ ଗୋଟିଏ ଧାରରେ ପହଞ୍ଚି ତଳକୁ ଖସି ପଡ଼ିବେ, ଏହି ଭୟରେ ସେମାନେ କୂଳ ଛାଡ଼ି ଆଦୌ ବେଶି ଦୂରକୁ ଯାଉ ନ ଥିଲେ । କ୍ରମେ ପୃଥିବୀ ଗୋଲାକାର ବୋଲି ୟୁରୋପରେ ଲୋକେ ଜାଣିଲେ । ତଥାପି ସେମାନଙ୍କର ଏକ ଅନ୍ଧ ବିଶ୍ୱାସ ଥିଲା ଯେ ବିଷୁବରେଖା ନିକଟରେ ସମୁଦ୍ରର ପାଣି ତରଳ ଅଗ୍ନି ପରି ଏବଂ ସେଠାକୁ ଜାହାଜ ଗଲେ ପୋଡ଼ି ଭସ୍ମ ହୋଇଯିବ । ତେଣୁ ଭୟସଂକୁଚିତ ୟୁରୋପୀୟ ନାବିକମାନେ କେବଳ ଭୂମଧ୍ୟସାଗରରେ ଗତାଗତ ହେଉଥିଲେ । ଆମେରିକା ବୋଲି ଏକ ଦେଶ ଯେ ଅଛି, ସେମାନେ ଏହା ସ୍ୱପ୍ନରେ ଭାବି ନ ଥିଲେ । ସେମାନେ ମନେ କରୁଥିଲେ ଯେ, ୟୁରୋପର ପଶ୍ଚିମ ପଟେ ଅନନ୍ତ ଆଟ୍ଲାଣ୍ଟିକ୍ ମହାସାଗରର ଜଳରାଶି ଛଡ଼ା ଆଉ କିଛି ନାହିଁ ।

ଆଲେକ୍‌ଜାଣ୍ଡାର ଭାରତ ଆକ୍ରମଣ କଲା ପରେ ୟୁରୋପର ଲୋକେ ଭାରତବର୍ଷର କଥା ପ୍ରଥମେ ଶୁଣିବାକୁ ପାଇଲେ ଏବଂ ଗ୍ରୀକ୍ ସୈନ୍ୟମାନଙ୍କ ଗଳ୍ପରୁ ସେମାନଙ୍କର ଧାରଣା ହେଲା ଯେ ଭାରତ ଏକ ଧନବନ୍ତ ଦେଶ, ସେଠି ସୁନାରୁପା ଓ ମଣିମାଣିକ୍ୟ ବର୍ଷା ହୋଇ ରହୁଛି । ଆଲେକ୍‌ଜାଣ୍ଡାରଙ୍କ ବହୁ ପରେ ମାର୍କୋପୋଲ୍ ନାମକ ଇଟାଲୀୟ ଭ୍ରମଣକାରୀ ଚୀନ ଦେଶରେ କେତେବର୍ଷ କଟାଇ ଘରକୁ ଫେରିଲେ ଏବଂ ଖଣ୍ଡିଏ ପୁସ୍ତକରେ ପ୍ରାଚ୍ୟ ଦେଶମାନଙ୍କର ବିଭବ ବର୍ଣ୍ଣନା କରି ପ୍ରକାଶ କଲେ । ପୁସ୍ତକ-ବର୍ଣ୍ଣିତ ବିଭବ ସେ କାଳର ୟୁରୋପୀୟମାନଙ୍କୁ କାଳ୍ପନିକ ବୋଧ ହୋଇଥିଲା ଏବଂ ସେମାନଙ୍କ ପ୍ରାଣରେ ଏହି ପ୍ରାଚ୍ୟଭୂମିମାନଙ୍କ ସଙ୍ଗେ ବାଣିଜ୍ୟସମ୍ପର୍କ ସ୍ଥାପନ କରି ସେହି ବିଭବରୁ ଯଥକିଞ୍ଚିତ୍ ପାଇବା ପାଇଁ ଏକ ତୀବ୍ର ପିପାସା ଜାଗ୍ରତ ହେଲା । ଆରବ ବଣିକମାନଙ୍କ ଦ୍ୱାରା ଆନୀତ ଭାରତ ଓ ଚୀନ୍‌ର ରେଶମବସ୍ତ୍ର, ଭାରତର ଚନ୍ଦନ କାଷ୍ଠ, ମଣି, ମାଣିକ୍ୟ, ସୁରଭି ମସଲା ପ୍ରଭୃତି ଦେଖି, ଭାରତ ପ୍ରଭୃତି ପ୍ରାଚ୍ୟଦେଶ ସବୁ ଯେ ଲକ୍ଷ୍ମୀଙ୍କର ବିଳାସଭୂମି, ଏଥିରେ ସେମାନଙ୍କର ସନ୍ଦେହ ରହିଲା ନାହିଁ ଏବଂ ସେହିସବୁ ଦେଶମାନଙ୍କ ସଙ୍ଗେ କପରି ହୋଇତ ବାଣିଜ୍ୟ କରାଯିବ ତାହାହିଁ ହେଲା ବର୍ତ୍ତମାନ ସମସ୍ୟା ।

ସ୍ଥଳଭାଗରେ ଭାରତକୁ ଆସିବାର ବାଟ ୟୁରୋପୀୟ-ମାନଙ୍କୁ ଅବଶ୍ୟ ଜଣାଥିଲା; କିନ୍ତୁ ସେ ପଥ ଦୀର୍ଘ ଓ ଦୁର୍ଗମ; ବହୁ ମରୁଭୂମି, ଦୁର୍ଭେଦ୍ୟଗମ୍ୟ ବନକାନ୍ତାର ପାର ହୋଇ ଯିବାକୁ ହେବ; ପୁଣି ପ୍ରତି ମୁହୂର୍ତ୍ତରେ ଆରବର ଦସ୍ୟୁଦଳମାନଙ୍କ ଦ୍ୱାରା

ଧନ ଓ ଜୀବନ ହରାଇବାର ଆଶଙ୍କା । ସମୁଦ୍ରପଥ ଅତ୍ୟନ୍ତ ବିପଦ । ୟୁରୋପୀୟମାନେ ବର୍ତ୍ତମାନ ଭାରତକୁ ସମୁଦ୍ରପଥ ଖୋଜି ବସିଲେ ।

ଏହି ସମୟରେ ଇଟାଲୀର ଜେନୋଆ ବନ୍ଦରରେ କଲମ୍ବସ ନାମକ ଜଣେ ନାବିକ ଥିଲେ । ଏହି ନାବିକଙ୍କ ମଧ୍ୟରେ ଜଣେ ମହାମାନବର ଦୂରଦୃଷ୍ଟି ଓ ସାହସ ଥିଲା । ବହୁବର୍ଷର କଠୋର ପରିଶ୍ରମ ପରେ ସେ ଗୋଟିଏ ଗ୍ଲୋବ୍ ଧରି ବସନ୍ତି ଏବଂ ଦିନପରେ ଦିନ ତାଙ୍କୁ ଗୃହିଁ ଗୃହିଁ ଭାରତକୁ ଯିବାର ଜଳପଥ ଖୋଜନ୍ତି । ତାଙ୍କ ଗ୍ଲୋବ୍‌ର ଭୂଚିତ୍ର ଅବଶ୍ୟ ବର୍ତ୍ତମାନର ଭୂଚିତ୍ର ଅପେକ୍ଷା ବେଶ୍ ଭିନ୍ନ ଥିଲା । ତାଙ୍କ ଗ୍ଲୋବ୍‌ରେ ଆମେରିକା ମହାଦେଶ, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ ଓ ପୂର୍ବ-ଭାରତୀୟ ଦ୍ୱୀପପୁଞ୍ଜ ଆଦୌ ନ ଥିଲା ଏବଂ ଆଫ୍ରିକାର କେବଳ ଉତ୍ତର ଉପକୂଳାଂଶ ସୂଚିତ ଥିଲା; ଭାରତବର୍ଷ ଓ ଚୀନ୍‌ଦେଶ କେବଳ କାଳ୍ପନିକ ଭାବରେ ୟୁରୋପର ପୂର୍ବକୁ ଅଙ୍କିତ ହୋଇଥିଲା । ବାକୀ ସମସ୍ତ ଭୂଭାଗ କେବଳ ସମୁଦ୍ରମୟ ଥିଲା ।

କଲମ୍ବସ ଏହିପରି ଏକ ଗ୍ଲୋବ୍‌କୁ ଦେଖି ଦେଖି ଠିକ୍ କଲେ, "ପୃଥିବୀ ତ" ଗୋଲାକାର ଏବଂ ଭାରତ ୟୁରୋପର ପୂର୍ବପଟେ । କେହି ଯଦି ଜାହାଜ ନେଇ ୟୁରୋପରୁ ଆଟଲାଣ୍ଟିକ ସମୁଦ୍ରକୁ ଅତିକ୍ରମ କରେ, ତେବେ ସେ ନିଶ୍ଚୟ ବୁଲି ବୁଲି ପୂର୍ବପଟେ ଭାରତର ଉପକୂଳରେ ଲାଗିବ । ତେବେ ଅସୁବିଧା ଏହି ଯେ, ଆଟଲାଣ୍ଟିକ ମହାସାଗର ଭିତରକୁ କେହି କେବେ ଭୟରେ ଯାଇନାହିଁ ।

ଅଚ୍ଛା; ମୁଁ ଯିବି ! ମୁଁ ୟୁରୋପକୁ ଭାରତର ଜଳପଥ ଦେଖାଇ ଦେଇ ଯଶ ଅର୍ଜ୍ଜନ କରିବି ।"



କଲମ୍ବସ୍

କଲମ୍ବସ୍ ଏକ ଦରିଦ୍ର ନାବିକ । ଅଜ୍ଞାତ ଅକୂଳ-ସମୁଦ୍ର ଅତିକ୍ରମ କରିବାକୁ ଗଲେ ଦୁ'ଖଣ୍ଡ ବଡ଼ ବଡ଼ ବୋଇତ ଦରକାର, ବହୁତ ରସଦ ସାଙ୍ଗରେ ନେବା ଉଚିତ; ସେଥିକି ଗୁହଁ ଲୋକବାକ୍ ମଧ୍ୟ ଆବଶ୍ୟକ । କଲମ୍ବସ ଏସବୁ ପାଇବେ କୁଆଡ଼ୁ ? ସେ ତାଙ୍କର ଦେଶର ପରି ବହୁ ଧନୀ ଓ ସାମନ୍ତମାନଙ୍କ

ନିକଟରେ ତାଙ୍କ ପ୍ରସ୍ତାବଟି ବ୍ୟାଖ୍ୟାନ କଲେ । କିନ୍ତୁ ସମସ୍ତେ କହିଲେ ଯେ ବିରାଟ ଆଟଲାଣ୍ଟିକ୍ ଭିତରକୁ ଜାହାଜ ଗଲେ ଆଉ ଫେରିବ ନାହିଁ; କଲମ୍ବସ ଏକ ବାୟା ଲୋକ । ବିଚରା କଲମ୍ବସ ଏହିପରି ଭାବରେ ଏହାର ତାର ଅନୁସରଣ କରୁ କରୁ ପ୍ରାୟ ଚଉଦ ବର୍ଷ କଟିଗଲା । ସେ ଫ୍ରାନ୍ସ ଓ ଇଂଲଣ୍ଡର ରାଜଦରବାରମାନଙ୍କୁ ମଧ୍ୟ ଗଲେ ଏବଂ ନିଜର ପ୍ରସ୍ତାବ ଜଣାଇଲେ; କିନ୍ତୁ କିଛି ଆଶା ଦେଖାଗଲା ନାହିଁ । ଶେଷରେ ସ୍ପେନ୍‌ର ରାଜାଙ୍କୁ ଭେଟିଲେ । ସ୍ପେନ୍‌ର ତତ୍କାଳୀନ ରାଣୀ ବୁଦ୍ଧିମତୀ ଇଜାବେଲା କଲମ୍ବସଙ୍କ ପ୍ରସ୍ତାବରେ ବିଶ୍ୱାସ କରି ତାହାଙ୍କୁ ଯଥାସାଧ୍ୟ ସାହାଯ୍ୟ କରିବାପାଇଁ ପ୍ରତିଶ୍ରୁତି ଦେଲେ । କଲମ୍ବସ ଇଟାଲୀର ଲୋକ । କିନ୍ତୁ ସ୍ପେନରାଜାଙ୍କ ପ୍ରତି କୃତଜ୍ଞତା ବଶତଃ ପ୍ରତିଜ୍ଞା କଲେ ଯେ, ସେ ଯେଉଁ ଭୂଭାଗ ସବୁ ଆବିଷ୍କାର କରିବେ, ସେସବୁ ସ୍ପେନରାଜାଙ୍କର ହେବ । ତେଣୁ ରାଜା କଲମ୍ବସଙ୍କ ପାଇଁ ତିନି ଖଣ୍ଡି ଜାହାଜ ଯୋଗାଡ଼ କରିଦେଲେ । ଏବର ବୋଇତମାନଙ୍କ ତୁଳନାରେ ସେଗୁଡ଼ିକ ଛୋଟ ଡଙ୍ଗା କୁହାଯିବାର କଥା । ଯେତେ ଛୋଟ ହେଲେ ମଧ୍ୟ ସେଗୁଡ଼ିକୁ ସମୁଦ୍ରରେ ଆୟତ୍ତ କରିବାପାଇଁ ବହୁ ଲୋକ ଦରକାର । କଲମ୍ବସଙ୍କ ସଙ୍ଗେ ଅକୂଳ ଅଜ୍ଞାତ ସମୁଦ୍ରରେ ଭାସିବାକୁ କିଏ ପ୍ରାଣ ମୂର୍ଚ୍ଛିବ ? କେହି ବାହାରିଲେ ନାହିଁ; ତେଣୁ ରାଜା ଆଦେଶ ଦେଲେ ଯେ, ପ୍ରାଣଦଣ୍ଡାଦେଶପ୍ରାପ୍ତ ଅପରାଧୀମାନଙ୍କୁ କଲମ୍ବସଙ୍କ ଜାହାଜରେ ନାବିକରୂପେ ପଠାଯାଉ । କଲମ୍ବସ ଅର୍ଦ୍ଧ ଶତାଧିକ ଅପରାଧୀଙ୍କୁ ନିଜର ସଙ୍ଗୀ କରି ପୃଥିବୀର ଇତିହାସରେ ଶ୍ରେଷ୍ଠତମ ଆବିଷ୍କାର ଲାଗି ବାହାରିଲେ । କିପରି କ୍ଷୁଦ୍ର ଘଟଣା-ମାନଙ୍କରୁ ବେଳେ ବେଳେ ଯୁଗାନ୍ତର ଘଟିଯାଏ, ତାହା କଲମ୍ବସଙ୍କ

ଏହି ଅଭିଯାନରୁ ବୁଝାଯାଏ । ଏବେ ଆଟଲାଣ୍ଟିକ୍‌ଗାମୀ ଷ୍ଟିମର ସବୁ ନାଜର ସ୍ୱାଚ୍ଛନ୍ଦ୍ୟମୟ କୋଠରିରେ କୋଟିପତି ଶ୍ୱେତାଙ୍ଗ-ମାନଙ୍କୁ ବୋହି ନେଇଯାଉଛନ୍ତି, କଲମ୍ବସଙ୍କର ବନ୍ଦୀ-ବାହିତ ଛୋଟ ଡଙ୍ଗାଗୁଡ଼ିକର ଆମେରିକା ଆଡ଼କୁ ପ୍ରଥମ ଅଭିଯାନ କଥା କେତେଜଣ ମନେ ପକାଏ ?

୧୪୯୨ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୩ ତାରିଖରେ କଲମ୍ବସ ୟୁରୋପର ଉପକୂଳ ତ୍ୟାଗ କଲେ । ସେ ପ୍ରଥମେ ୟୁରୋପର କୂଳେ କୂଳେ ଯାଇ ଆଫ୍ରିକାର ପଶ୍ଚିମ ଦିଗସ୍ଥ କାନାରି ଦ୍ୱୀପପୁଞ୍ଜରେ ଥକା ମାରିଲେ । ସେଠାରେ ପଶ୍ଚିମବାହୀ ଅନୁକୂଳ ପବନ ପାଇ ସେଠାରୁ ପୁଣି ଯାତ୍ରା କଲେ । ତାପରେ ଅନନ୍ତ ସମୁଦ୍ର । ଦିନ ପରେ ଦିନ କଟିଲା । ସପ୍ତାହ ପରେ ସପ୍ତାହ ଆସିଲା । ସମୁଦ୍ରର ଶେଷ କାହିଁ ? ଦୁଇ ମାସ କଟିଗଲା କେବଳ ଜଳ, ଜଳ, ଜଳ । କଲମ୍ବସଙ୍କର ନାବିକମାନେ ବିଦ୍ରୋହ କରି ବସିଲେ । ସେମାନେ ଦେଶକୁ ଫେରିଯିବାକୁ ଜିଦ୍ ଧରିଲେ; କାରଣ ସେମାନେ ସ୍ଥିର ବିଶ୍ୱାସ କରିଥିଲେ ଯେ ପାଗଳ କଲମ୍ବସ୍ ସେମାନଙ୍କୁ ସପୋତ ଜଳସମାଧି ଦେବ । ଅନନ୍ତ ସମୁଦ୍ରରେ ବିଦ୍ରୋହୀ କର୍ମଚାରୀମାନଙ୍କୁ ସମ୍ଭାଳି ଓ ସାନ୍ତ୍ୱନା ଦେଇ କଲମ୍ବସ ଯେପରି ଭାବରେ ଆଗକୁ ମାଡ଼ି ଚାଲିଲେ, ତାହା କେବଳ ବୀର ପୁରୁଷ ପକ୍ଷରେ ସମ୍ଭବ ।

ଶେଷରେ କଲମ୍ବସ ଆଉ ସପ୍ତାହେ କାଳ ଅପେକ୍ଷା କରିବାକୁ ନାବିକମାନଙ୍କୁ କହି ରହିଥିଲେ । ଭାଗ୍ୟକୁ ସେହି ସପ୍ତାହ ମଧ୍ୟରେ ଭାସମାନ ଦଳ, ଗଛଡାଳ ଓ ଜଳଚରୀଯୁମାନ

ପକ୍ଷୀ ପ୍ରଭୃତି ସ୍ଥଳଭାଗର ଚିହ୍ନମାନ ଦେଖାଗଲା । ଅକ୍ଟୋବର ମାସ ୧୧ ତାରିଖ ରାତିରେ କଲମ୍ବସ ଓ ତାଙ୍କର କର୍ମଚାରୀମାନେ ଦୂରରୁ ଗୋଟିଏ ଆଲୋକ ଦେଖି ପାଇଥିଲେ । ସେହିଦିନ ସକାଳେ ସ୍ଥଳ ଭାଗ ପରିଷ୍କାର ଦେଖାଗଲା । କଲମ୍ବସ ଆମେରିକାର ପୂର୍ବ ଦିଗସ୍ଥ ଦ୍ୱୀପପୁଞ୍ଜ ମଧ୍ୟରୁ ଗୋଟିଏ ଦ୍ୱୀପରେ ଆସି ପହଞ୍ଚିଥିଲେ । କିନ୍ତୁ ସେ ଭାବିଲେ ଯେ, ସେ ଭାରତବର୍ଷ ନିକଟରେ ପହଞ୍ଚିଛନ୍ତି । ତେଣୁ ସେ ସେହି ଦ୍ୱୀପଗୁଡ଼ିକୁ ଭାରତୀୟ ଦ୍ୱୀପପୁଞ୍ଜ ବୋଲି ନାମିତ କଲେ । ତାଙ୍କର ଏହି ଭ୍ରମାତ୍ମକ ନାମକରଣ ଏପର୍ଯ୍ୟନ୍ତ ଚଳିଆସୁଛି ।

ସ୍ଥଳଭାଗକୁ ଅବତରଣ କରି କଲମ୍ବସ୍ ଓ ତାଙ୍କର ଅନୁଚରଗଣ ଭକ୍ତିଗଦ୍‌ଗଦ୍ ଚିତ୍ତରେ ଜାନୁପାତ ପୂର୍ବକ ଈଶ୍ୱରଙ୍କୁ ପ୍ରାର୍ଥନା କରିଥିଲେ । ସେ ଭାବିଥିଲେ, ବିଧାତା ତାଙ୍କୁ ଭାରତ-ବର୍ଷରେ ଆଣି ପହଞ୍ଚାଇଛନ୍ତି; କିନ୍ତୁ ଆମ୍ଭେମାନେ ଆଜି ଦେଖି ପାରୁଛୁଁ ଯେ ବିଧାତା ଅନ୍ୟ ଏକ ମହତ୍ କର୍ମରେ କଲମ୍ବସଙ୍କୁ ନିମିତ୍ତ ମାତ୍ର କରିଥିଲେ । କଲମ୍ବସ୍ ଏହି ଭ୍ରମ କରି ନ ଥିଲେ, ଆମେରିକା ଏ ପର୍ଯ୍ୟନ୍ତ ଅଜ୍ଞାତଭୂମି ହୋଇ ପଡ଼ି ଥାଆନ୍ତା । କିନ୍ତୁ ବିଧାତାର ବିଚିତ୍ର ଇଙ୍ଗିତରେ ଲୋକର ଭ୍ରମରୁ ମଧ୍ୟ ମାନବର ମହୋପକାରୀ ବହୁଦ୍ରବ୍ୟ ଓ ତଥ୍ୟ ଆବିଷ୍କୃତ ହୋଇଅଛି ।

କଲମ୍ବସ ଯେଉଁ ବାଟେ ଯାଇଥିଲେ ସେ ବାଟେ ଫେରି ନ ଥିଲେ । ସେ ଜାଣିଥିଲେ, ସେହି ବାଟେ ଗଲେ ବାୟୁ ତାଙ୍କର ପ୍ରତିକୂଳ ହେବ; ତେଣୁ ସେ ତାଙ୍କର ଜାହାଜଗୁଡ଼ିକୁ କିଛି ଦୂର ଉତ୍ତରକୁ ନେଇ ସେଠାରୁ ଅନୁକୂଳ ପବନରେ ସ୍ପେନ ଆଡ଼କୁ

ଫେରିଥିଲେ । ଭିନ୍ନ ଭିନ୍ନ ଅଜ୍ଞାତ ସ୍ଥାନରେ ପବନର ଭିନ୍ନ ଭିନ୍ନ ଗତି ବିଷୟରେ କଲମ୍ବସଙ୍କର ଏହି ଜ୍ଞାନ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । କାରଣ ସେ ଯେଉଁ ବାଟେ ଗଲେ ସେ ବାଟେ ପୂର୍ବରୁ କେହି ଯାଇ ନ ଥିଲେ; ତେଣୁ ସେ ବାଟରେ ବାୟୁର ଗତି ଠିକ୍ ଭାବରେ ଧରିପାରିବା କଲମ୍ବସଙ୍କଠାରେ ଏକ ରହସ୍ୟମୟ ଶକ୍ତିର ପରିଚୟ ଦିଏ । ସେହି ଶକ୍ତି ଆଜି ତାଙ୍କୁ ଜଗତରେ ଶ୍ରେଷ୍ଠ ନାବିକ ରୂପେ ସମ୍ମାନିତ କରୁଅଛି ।

ସ୍ପେନ୍‌କୁ ଫେରି କଲମ୍ବସ ରାଜା ଓ ରାଣୀଙ୍କ ଦ୍ୱାରା ମହା-ସମାରୋହରେ ସମ୍ବର୍ଦ୍ଧିତ ହୋଇଥିଲେ । କିନ୍ତୁ ତାଙ୍କର ଏହି ଯଶ ଅନେକଙ୍କର ଚକ୍ଷୁଶୂଳ ହେଲା ଏବଂ ସେମାନଙ୍କ କୁଚକ୍ରମାନ ଫଳରେ ସରଳାତ୍ମା କଲମ୍ବସ ଶେଷରେ ଦାରିଦ୍ର୍ୟ ଓ ଲାଞ୍ଛନା ମଧ୍ୟରେ କାରାଗାରରେ ପ୍ରାଣତ୍ୟାଗ କରିଥିଲେ ।

କଲମ୍ବସ ଜୀବନରେ ଲାଞ୍ଛନା ସିନା ପାଇଲେ, ମୃତ୍ୟୁ ତାଙ୍କ ପାଇଁ ଚିରକାଳ ଲାଗି ସାରା ପୃଥିବୀରେ ସମ୍ମାନ ଆଣିଦେଲା । ଯେଉଁମାନେ ଅସାଧାରଣ କାର୍ଯ୍ୟ କରନ୍ତି, ସାଧାରଣ ଲୋକେ ତାଙ୍କୁ ବୁଝିପାରନ୍ତି ନାହିଁ, କି ଉପଯୁକ୍ତ ସମ୍ମାନ ଦେଖାନ୍ତି ନାହିଁ । ମାତ୍ର ଇତିହାସରେ ସେମାନେ ଅମର ହୋଇରହନ୍ତି । କଲମ୍ବସ୍ ମାନବ ଇତିହାସରେ ଏକ ଅମର ପୁରୁଷ ।

କଲମ୍ବସ୍ ଯେଉଁ ବାଟ ଦେଖାଇଲେ, ସେଇ ବାଟରେ ଦଳ ଦଳ ସାହସୀ ଶ୍ୱେତାଙ୍ଗ ନାବିକ ଯାତ୍ରା କରିବାକୁ ଲାଗିଲେ । ଦେଖୁଁ ଦେଖୁଁ ଶ୍ୱେତାଙ୍ଗ ନାବିକମାନେ ପୃଥିବୀର ସକଳ ସମୁଦ୍ରରେ ପାଲ ଓ ପତାକା ଟେକିଲେ । ଏବେ ପୃଥିବୀର ଅର୍ଦ୍ଧେରୁ ଅଧିକ

ଶ୍ୱେତଜାତିର କରଗତ । ଏଥିରେ ଆଶ୍ଚର୍ଯ୍ୟର କଥା କିଛି ନାହିଁ । ବୀରଭୋଗ୍ୟା ବସୁନ୍ଧରା । ଯାର ମନରେ ସାହସ ଓ ଯେ ପରିଶ୍ରମ କରିବାକୁ କୁଣ୍ଠିତ ନୁହେଁ, ଜୀବନ-ଯୁଦ୍ଧରେ ସେହି ଏକା ଜୟୀ ହୋଇଥାଏ । ଆମେ ଘରପଶା ଭାରତୀୟମାନେ ଗୋଟିଏ ଗୋଟିଏ ଗାଁ ଭିତରେ ପୁରୁଷକୁ ପୁରୁଷ କଟାଇ ବ୍ରାହ୍ମଣ, କରଣ, ଶୂଦ୍ର, ପ୍ରଭୃତି ନାନାଜାତିରେ ଆପଣା ସମାଜକୁ ଭାଗ ଭାଗ କରି ଆପଣା ଆପଣା ଭିତରେ ହଣାହଣି ମରାମରି ହେଉଛୁଁ । କି ଦୁର୍ଦ୍ଦଶା ! ଅମ୍ଭେମାନେ ଅମ୍ଭମାନଙ୍କର ଦୁର୍ବଳତା ଦୂର କରି, ଏକ ହୋଇ; ସାହସୀ, ବଳିଷ୍ଠ, କର୍ମଠ ଓ ବୀର ଜାତି ରୂପେ ଠିଆହେବା ଆଉ କେବେ ?

## ପ୍ରଶ୍ନ

(କ)

୧ । "ବିଧାତାର ବିଚିତ୍ର ଇଙ୍ଗିତରେ ଲୋକର ଭ୍ରମରୁ ମଧ୍ୟ ମାନବର ମହୋପକାରୀ ବହୁ ଦ୍ରବ୍ୟ ଓ ତଥ୍ୟ ଆବିଷ୍କୃତ ହୋଇଥାଏ"—ଏହାର ବ୍ୟାଖ୍ୟା କର ।

୨ । ଆମେରିକା ଆବିଷ୍କାରରେ କଲମ୍ବସ୍‌ଙ୍କର କି ମହତ୍ତ୍ୱ ଗୁଣର ପ୍ରକାଶ ହୋଇଥିଲା ଲେଖ ।

୩ । କଲମ୍ବସ୍‌ଙ୍କର ଶେଷ ଜୀବନ କିପରି ଭାବରେ କଟିଥିଲା ?

୪ । କଲମ୍ବସ୍‌ଙ୍କର ଗ୍ଲୋବ୍ କିପରି ଥିଲା ?

(ଖ)

୧ । ଇଙ୍ଗିତ, ଲାଞ୍ଛନା, ବାହ୍ନିକ, ସମସ୍ୟା, ଜାନୁପାତ ଓ ଯୁଗାନ୍ତର—ଏମାନଙ୍କ ଅର୍ଥ ବାକ୍ୟରେ ପ୍ରକାଶ କର ।

୨ । ଦୁରଧିଗମ୍ୟ, ଆବିଷ୍କାର, ସ୍ୱଚ୍ଛନ୍ଦ, ନାବିକ, ବୈଶିଷ୍ଟ୍ୟ—ଏମାନଙ୍କର ସନ୍ଧିବିଚ୍ଛେଦ କର ।

୩ । ଘରପଶା, ଚକ୍ଷୁଶୂଳ, କୂଟନୀତି, ଜଳସମାଧି, ଜୀବନ ଯୁଦ୍ଧ, ପ୍ରାଣଦଣ୍ଡାଦେଶ—ଏମାନଙ୍କର ସମାସବ୍ୟାଖ୍ୟା କର ।

୪ । ଅବତରଣ, ପ୍ରତିକୂଳ, ପରିଶ୍ରମ, ବିଧାତା, ଅନୁକୂଳ—ଏ ଶବ୍ଦମାନଙ୍କରେ ଉପସର୍ଗଗୁଡ଼ିକର ଅର୍ଥଗତ ବ୍ୟବହାର ଲେଖ ।

---

## ମହାନୁଭବ ଲର୍ଡ଼ ଶାଫ୍‌ଟ୍‌ସ୍‌ବରୀ

ବର୍ତ୍ତମାନ ଯୁଗରେ ବାଳକ ବାଳିକାମାନଙ୍କର ଚିତ୍ତବିନୋଦନ ଲାଗି ନାନା ଆୟୋଜନ ହେଉଅଛି । ସବୁ ଦେଶର ଲୋକେ, ବାଳକବାଳିକା ଯେ ଭବିଷ୍ୟତ ଜାତି, ଏହା ଉତ୍ତମରୂପେ ହୃଦୟଙ୍ଗମ କରି ସେମାନଙ୍କର ସ୍ୱଚ୍ଛନ୍ଦ ଲୀଳା, ସ୍ୱାଭାବିକ ଅଭିରୁଚି ଓ ସହଜାତ ବୃତ୍ତିମାନଙ୍କର ଅବାଧ ଉନ୍ନତି ଲାଗି ସମସ୍ତ ପ୍ରକାର ସୁବିଧା କରିଦେଇଛନ୍ତି । ପ୍ରାଥମିକ ଶିକ୍ଷା ବର୍ତ୍ତମାନ ଶିକ୍ଷକର ରୁଚି ଅନୁଯାୟୀ ନ ହୋଇ ବାଳକ ବାଳିକାମାନଙ୍କର ରୁଚି ଅନୁଯାୟୀ ପ୍ରତିଷ୍ଠିତ ହେଉଅଛି । ସବୁଠାରେ ପାଠଶାଳାମାନଙ୍କରେ ଶିଶୁକୁ ଯେପରି ବେଶି ପରିଶ୍ରମ କରିବାକୁ ନ ପଡ଼େ, ସେ ଯେପରି ତାର ସ୍ୱାଭାବିକ ବୃତ୍ତି ଅନୁସାରେ ପ୍ରଚୁର କ୍ରୀଡ଼ା କୌତୁକ କରିବାକୁ ସୁଯୋଗ ପାଏ, ତାହା ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଆଯାଉଅଛି । କିନ୍ତୁ ଦୁଇଶତ ଶହେ ବର୍ଷ ତଳେ ପୃଥିବୀର ଗୃହଆଡ଼େ ଶିଶୁମାନଙ୍କର ଏପରି ଶୁଭଦିନ ନ ଥିଲା; ସେମାନଙ୍କୁ କାଳାନ୍ତକରୂପୀ ଅବଧାନ, ହାତରୁ ନିବୃତ୍ତମାଡ଼ ଖାଇ ଖାଇ

ପ୍ରତ୍ୟହ ଅଶ୍ରୁବର୍ଷଣ କରିବାକୁ ପଡ଼ୁଥିଲା । ଯେଉଁମାନେ ପାଠ ପଢ଼ିବାକୁ ଅସୁ ନ ଥିଲେ, ସେମାନଙ୍କୁ ଅନ୍ୟ କ୍ଷେତ୍ରରେ ଭୟଙ୍କର ଅତ୍ୟାଗ୍ରୁର ଭିତର ଦେଇ ଦୁଃଖମୟ ଜୀବନଯାପନ କରିବାକୁ ହେଉଥିଲା ।

ବିଶେଷତଃ ଇଂଲଣ୍ଡରେ ଶହେ ବର୍ଷ ତଳେ ଶିଶୁ ବାଳକ-ମାନଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଥିଲା । ଏହି ସମୟରେ କଳଯୁଗର ଆରମ୍ଭ ହୋଇଥିଲା । ଲୋକେ ଯୁଗ ଯୁଗ ଧରି ନିଜ ନିଜ ଘରେ ଚରଖାରେ ସୂତା କାଟି ଲୁଗା କରି ପିନ୍ଧୁଥିଲେ; କିନ୍ତୁ ହଠାତ୍ କଳ ଆବିଷ୍କୃତ ହୋଇ ବହୁ ଲୋକର କାମ ଜଣଙ୍କ ଦ୍ୱାରା ହେବାକୁ ଲାଗିଲା । କଳ ଚଳାଇବା ପାଇଁ ଯେଉଁ ଲୋକ ଦରକାର, ସେମାନେ ଯେ ଅତ୍ୟନ୍ତ ବୁଦ୍ଧିମାନ୍ ବା କୁଶଳୀ ହେବା ଦରକାର, ଏପରି ଆଦୌ ନୁହେଁ । କାରଣ ଖାଲି ଚଳାଇ ଦେଲେ କଳ ଆପଣାଛାଏଁ ସୂତାକଟାଠୁଁ ଲୁଗାବୁଣା ଯାଏ ସବୁ-କାମ ଆପେ କରିଦିବ; ତେଣୁ ଗୋଟିଏ ଛୋଟ ପିଲା ଦ୍ୱାରା କଳ ମୋଡ଼ାଇଲେ ମଧ୍ୟ ଚଳେ । ବଡ଼ଲୋକଙ୍କୁ ବେଶି ପାରିଶ୍ରମିକ ଦେଇ ଅଣାଇବା ଅପେକ୍ଷା କଳମାଲିକମାନେ ଛୋଟ ପିଲାଙ୍କୁ ଅଳ୍ପ ପାରିଶ୍ରମିକ ଦେଇ ଖଟାଇବାକୁ ଲାଭଜନକ ମନେ କରୁଥିଲେ । ସେ ସମୟରେ ଛୋଟ ପିଲା ମଧ୍ୟ ଶସ୍ତାରେ କାମ କରିବା ପାଇଁ ମିଳୁଥିଲେ । ତେଣୁ ନିର୍ମମ କଳମାଲିକମାନେ ପିତୃମାତୃହୀନ ଦରିଦ୍ର ପିଲାମାନଙ୍କୁ ସଂଗ୍ରହ କରି ନେଇ କଳରେ ଜୀବନହୀନ କଳ ପରି ସେମାନଙ୍କୁ ଖଟାଉଥିଲେ । ସେମାନଙ୍କର ଖିଆପିଆର ଠିକଣା ନ ଥିଲା, ଖେଳିବାକୁ ଛାଡ଼ ଦଆପାଉ ନ ଥିଲା, ବିଶ୍ରାମ କରିବାକୁ ଦଆଯାଉ ନ ଥିଲା । ସକାଳୁ ସନ୍ଧ୍ୟାଯାଏ କେବଳ

ଅନବରତ ଖଟଣି । କୌଣସି କୌଣସିଠାରେ କାଳେ କେଉଁ ପିଲା କେତେବେଳେ ତା ଜାଗାରୁ ପଳାଇପାରେ, ଏହି ଆଶଙ୍କାରେ ପିଲାଗୁଡ଼ିକଙ୍କୁ ଚୌକି ସହିତ ବାନ୍ଧି ଦିଆ ଯାଉଥିଲା ଏବଂ ତା ସତ୍ତ୍ୱେ କଠୋର ପରିଶ୍ରମରେ କୋମଳାଙ୍ଗ ବାଳକ ଯଦି କ୍ଲାନ୍ତିରେ ଥକିଯାଏ, ତେବେ ପଛରୁ ନିଦାରୁଣ କଷାଘାତ ପ୍ରୟୋଗ ଦ୍ୱାରା ତାର ପରିଶ୍ରାନ୍ତ ଅବୟବଗୁଡ଼ିକୁ ପୁଣି କର୍ମରେ ଲଗାଇ ଦିଆଯାଉଥିଲା ।

ଏହି ନିର୍ମମ ଓ ଅମାନୁଷିକ ବ୍ୟାପାର ବହୁ ଦିନ ଧରି ଚାଲିଲେ ହେଁ କେହିହେଲେ ଏହା ବିରୁଦ୍ଧରେ ପାଟି ଫିଟାଉ ନ ଥିଲେ । କାରଣ କଳମାଲିକମାନେ ଧନବନ୍ତ ଥିବାରୁ ଓ ଧନ-ବଳରେ ସମାଜରେ ମୁଖ୍ୟସ୍ଥାନ ଅଧିକାର କରିଥିବାରୁ ସେମାନଙ୍କ ଆଚରଣର ବିରୁଦ୍ଧରେ କହିବାକୁ କାହାରି ସାହସ ହେଉ ନ ଥିଲା । ପରିଶେଷରେ ବିଧାତାଙ୍କ ନିର୍ଦ୍ଦେଶ ସ୍ୱରୂପ ବାଳକ ବାଳିକାମାନଙ୍କର ପରମ ବନ୍ଧୁ ପରି ଲର୍ଡ଼ ଶାଫ୍‌ଟ୍‌ସ୍‌ବରୀ ଆବିର୍ଭୂତ ହୁଅନ୍ତେ ଇଂଲଣ୍ଡର ବାଳକ ବାଳିକାମାନଙ୍କର ଶୁଭଦିନ ଆରମ୍ଭ ହେଲା ।

ଲର୍ଡ଼ ଶାଫ୍‌ଟ୍‌ସ୍‌ବରୀ ସମ୍ଭ୍ରାନ୍ତବଂଶୀୟ ଧନୀକ ପିତାର ସନ୍ତାନ ଥିଲେ । ତାଙ୍କ ପିତା ମଧ୍ୟ ଜଣେ 'ଲର୍ଡ଼' ବା ସାମନ୍ତ ଥିଲେ । କିନ୍ତୁ ଇଂଲଣ୍ଡର ପ୍ରଥାନୁସାରେ ତାଙ୍କ ପିତା ଦୀର୍ଘକାଳ ବଞ୍ଚି ରହିଥିବାରୁ ସେ ବହୁଦିନ ଯାଏ ତାଙ୍କ ସାଧାରଣ ନାମ ଆଶ୍‌ଲିକୁପର ରୂପେ ଗୃହିଆଡ଼େ ପରିଚିତ ହୋଇଥିଲେ । ପିତାଙ୍କ ମୃତ୍ୟୁ ପରେ କୌଳିକ ଉପାଧି ଗ୍ରହଣ କରି ସେ ଲର୍ଡ଼ 'ଶାଫ୍‌ଟ୍‌ସ୍‌ବରୀ'—ଏହି ନାମ ପ୍ରଥମେ ବ୍ୟବହାରକରି ଯେତେବେଳେ

କୌଣସି ଦାତବ୍ୟ ଅନୁଷ୍ଠାନ ପାଇଁ ଅର୍ଥ ସାହାଯ୍ୟ ଲାଗି ସାଧାରଣଙ୍କୁ ନିବେଦନ କଲେ, ସେତେବେଳେ ତାଙ୍କୁ ଜଣେ ଅପରିଚିତ ବ୍ୟକ୍ତି ଲେଖି ପଠାଇଲେ ଯେ, ସେ ଲର୍ଡ଼ ଶାଫ୍‌ଟ୍‌ସ୍‌ବରୀ କିଏ ଜାଣନ୍ତି ନାହିଁ ଏବଂ ଯେ କେହି ହୁଅନ୍ତୁ ନା କାହିଁକି, ତାଙ୍କର ସେହି ନିବେଦନକୁ କେହି ଶୁଣିବେ ନାହିଁ । କାରଣ ଦୟାବାନ୍ ଆଶ୍‌ଲିଙ୍କ ନାମ ତାହା ସହିତ ସଂଯୁକ୍ତ ନୁହେଁ ।

ଆଶ୍‌ଲି ଧନିକ ପିତାର ଜ୍ୟେଷ୍ଠ ସନ୍ତାନ ହେଲେହେଁ ତାଙ୍କର ଶୈଶବ ବଡ଼ ଦୁଃଖରେ କଟିଥିଲା । ତାଙ୍କର ପିତା ତାଙ୍କ ପ୍ରତି କଠୋର ବ୍ୟବହାର କରୁଥିଲେ ଏବଂ ନିଜେ ଘରେ ନ ରହି ପିଲାଙ୍କ ଲାଳନ ପାଳନ ଭାର ଭୃତ୍ୟମାନଙ୍କ ଉପରେ ଦେଇଯାଉଥିଲେ । ଭୃତ୍ୟମାନେ ବରାବର ପିଲାଗୁଡ଼ିକଙ୍କୁ ଅବହେଳା କରୁଥିଲେ । ତେଣୁ ବିସ୍ତୃତ ସମ୍ପତ୍ତିର ଭବିଷ୍ୟତ ଅଧିକାରୀ ହୋଇ ମଧ୍ୟ ସେ କ୍ରମାଗତ ବହୁଦିନ ଉପବାସ ରହିବା କି ଦୁଃଖ ତାହା ଜାଣିଥିଲେ ଏବଂ ଘୋର ଶୀତରାତ୍ରିମାନଙ୍କରେ ଗରମ ବସ୍ତ୍ର ବା ଟିକିଏ ଅଗ୍ନି ଉତ୍ତାପର ଅଭାବରୁ ସମସ୍ତ ରାତ୍ରି ବିନିଦ୍ର ହୋଇ କଟାଇବା ସେ ଅନେକବାର ଅନୁଭବ କରିଥିଲେ ।

ସପ୍ତମ ବର୍ଷ ବୟସରେ ସେ ଯେଉଁ ବିଦ୍ୟାଳୟକୁ ପ୍ରେରିତ ହୋଇଥିଲେ, ତାହା ମଧ୍ୟ ଘର ପରି ଭୟଙ୍କର ହୋଇଥିଲା । ସେଠି ମଧ୍ୟ ତାଙ୍କୁ ଉପବାସ ଓ ଭୟରେ ଦିନାତିପାତ କରିବାକୁ ପଡ଼ିଥିଲା । ଶୈଶବକାଳରେ ଆଶ୍‌ଲେଙ୍କର ଏକମାତ୍ର ବନ୍ଧୁ ଥିଲେ ତାଙ୍କର ବୁଢ଼ୀ ଧାଈ । ସେହି ବୁଢ଼ୀ ତାଙ୍କୁ ପ୍ରଥମେ ଉପାସନା କରିବାକୁ ଶିଖାଇ ଦେଇଥିଲେ ଏବଂ ଆଶ୍‌ଲି

ତାଙ୍କର ନିକଟରେ କେବଳ ନିଜର ଦୁଃଖ ଜଣାଇବାକୁ ସାହସ କରୁଥିଲେ । କିନ୍ତୁ ତାଙ୍କର ଦୁର୍ଭାଗ୍ୟକୁ ଏକ ମାତୃସମା ଧାତ୍ରୀ ତାଙ୍କର ବାଲ୍ୟାବସ୍ଥାରେହିଁ ପ୍ରାଣତ୍ୟାଗ କରିଥିଲେ । ଅଣ୍ଟଲିଙ୍କ ଜୀବନ ଅତ୍ୟନ୍ତ ଦୁଃଖମୟ ହୋଇ ଉଠିଲା । ମଲାବେଳେ ଧାତ୍ରୀ ତାଙ୍କୁ ତାଙ୍କର ଘଣ୍ଟାଟି ଦେଇ ଯାଇଥିଲେ । ଅଣ୍ଟଲି ସମସ୍ତ ସମ୍ପଦ ମଧ୍ୟରେ ଦରିଦ୍ରା ଧାତ୍ରୀର ସେହି ପୁରାତନ ଘଣ୍ଟାଟି ଛଡ଼ା ଅନ୍ୟ ଘଣ୍ଟା ବ୍ୟବହାର କରି ନ ଥିଲେ ଏବଂ ଗର୍ବସହକାରେ ସେ ତାହା ବନ୍ଧୁମାନଙ୍କୁ ଦେଖାଇ କହୁଥିଲେ, "ଜଗତରେ ମୋର ଶ୍ରେଷ୍ଠ ବନ୍ଧୁ ମତେ ଏହା ଦେଇଯାଇଛନ୍ତି ।"

ଶାଫ୍‌ଟ୍‌ସ୍‌ବରି ତାଙ୍କର ଦୁଃଖମୟ ଶୈଶବ କେବେହେଲେ ଭୁଲିଯାଇ ନ ଥିଲେ ଏବଂ ସମସ୍ତ ଜୀବନରେ ଅନ୍ୟ ଦୀନହୀନ ନିର୍ଯ୍ୟାତିତ ଶିଶୁମାନଙ୍କର ଦୁଃଖ ଦୂରୀକରଣ ଲାଗି ତାଙ୍କର ସମସ୍ତ ଶକ୍ତି ବ୍ୟୟ କରିଥିଲେ ।

ସେ ପାର୍ଲାମେଣ୍ଟ ମହାସଭାର ସଦସ୍ୟ ଥିଲେ ଏବଂ ପୂର୍ବବର୍ଣ୍ଣିତ କଠୋର ଶ୍ରମନିଷ୍ପେଷିତ କଲକାରଖାନାର ବାଳକମାନଙ୍କର କର୍ମକାଳ ୧୨ ଘଣ୍ଟାରୁ ୧୦ ଘଣ୍ଟା କରିଦେବା ପାଇଁ ଗୋଟିଏ ପ୍ରସ୍ତାବ ପାର୍ଲାମେଣ୍ଟରେ ଆଗତ କଲେ । କିନ୍ତୁ ସେ କାଳର କଳ ମାଲିକମାନେ ଏପରି ସ୍ୱାର୍ଥାନ୍ଧ ଓ ହୃଦୟହୀନ ଥିଲେ ଯେ ଏହି ସାମାନ୍ୟ ପରିବର୍ତ୍ତନ ଲାଗି ମଧ୍ୟ ସେମାନେ ଘୋର ଅନିଚ୍ଛା ପ୍ରକାଶ କରି ଏହି ପ୍ରସ୍ତାବରେ ପ୍ରତିବାଦ କଲେ । ଶାଫ୍‌ଟ୍‌ସ୍‌ବରି ସଭାସମିତିରେ ବକ୍ତୃତା ଦେଇ ଓ ସମ୍ବାଦପତ୍ରମାନଙ୍କରେ ଲେଖାଲେଖି କରି ବାଳକବାଳିକାମାନଙ୍କ ପ୍ରତି କି ପ୍ରକାର ଅମାନୁଷିକ ଅତ୍ୟାଚାର ହେଉଥିଲା, ତାହା ଜନସାଧାରଣ ଓ ଧନିକମାନଙ୍କୁ କ୍ରମେ

ବୁଝାଇବାକୁ ଚେଷ୍ଟା କଲେ; କିନ୍ତୁ ତାଙ୍କର ସାଧୁ ଚେଷ୍ଟା ଫଳବତୀ ହେବାକୁ ଦୀର୍ଘ ଚଉଦ ବର୍ଷ ଲାଗିଥିଲା ଏବଂ ପରିଶେଷରେ ଦଶ ଘଣ୍ଟିଆ ପ୍ରସ୍ତାବ ନିୟମରେ ପରିଣତ ହୋଇଥିଲା ।

ଏହା ଫଳରେ ଦେଶର ସର୍ବାଞ୍ଚଳର କଳକାରଖାନା-ମାନଙ୍କରେ ଆନନ୍ଦୋଚ୍ଛ୍ୱାସ ଖେଳିଯାଇଥିଲା । ଶ୍ରମିକମାନେ ବୁଝିଲେ, କିଏ ବାଳକମାନଙ୍କୁ ଅତ୍ୟାଚାରରୁ ଉଦ୍ଧାର କରିଛନ୍ତି ଏବଂ ସେମାନଙ୍କ ନିକଟକୁ ଗଲାବେଳେ ସେମାନେ ଶାଫ୍‌ଟ୍‌ସ୍‌ବରୀଙ୍କୁ ଉଚ୍ଚୋଳ କୋଳାହଳ ମଧ୍ୟରେ ସମ୍ବର୍ଦ୍ଧନା କରିବାକୁ ଲାଗିଲେ ।

କଳକାରଖାନାର ନିର୍ଯ୍ୟାତିତ ବାଳକମାନଙ୍କୁ ସାହାଯ୍ୟ କରି ସାରି ଶାଫ୍‌ଟ୍‌ସ୍‌ବରୀ ଅନ୍ୟଆଡ଼େ ତାଙ୍କର କରୁଣାପୂର୍ଣ୍ଣ ଦୃଷ୍ଟି ସଞ୍ଚାଳନ କରିଥିଲେ । ଇଂଲଣ୍ଡର ପ୍ରତ୍ୟେକ ଗୃହରେ ଧୂମନିର୍ଗମନ ପାଇଁ ଧୂମନାଳୀ ଥାଏ । ଏହି ଧୂମନାଳୀ ପୂର୍ବେ ଅତ୍ୟନ୍ତ ସଙ୍କୀର୍ଣ୍ଣ ଓ ଦୀର୍ଘ ହୋଇ ତିଆରି ହେଉଥିଲା ଏବଂ ତାକୁ ପରିଷ୍କାର କରିବା ଗୋଟିଏ ବଡ଼ ମନୁଷ୍ୟ ପକ୍ଷରେ ସମ୍ଭବ ନ ଥିଲା । ସେଥିଲାଗି ଛୋଟ ପିଲାମାନଙ୍କୁ ଭିତରକୁ ଠେଲି ଦିଆଯାଉଥିଲା ଏବଂ ଯେଉଁମାନେ ଭୟରେ ଆଦୌ ଉଠିବାକୁ ଇଚ୍ଛା କରୁ ନ ଥିଲେ, ସେମାନଙ୍କର କୋମଳ ପାଦସବୁକୁ ତଳୁ ନିଆଁ ଲଗାଇ ଦଗ୍‌ଧ କରି ଦିଆଯାଉଥିଲା । ଶିଶୁମାନଙ୍କର ବୟସ ଅନେକ ସ୍ଥାନରେ ପାଞ୍ଚବର୍ଷରୁ ମଧ୍ୟ କମ୍ ହୋଇଥାଏ । ଏହିପରି କୋମଳ ବୟସ୍କ କୋମଳାଙ୍ଗ ଶିଶୁମାନଙ୍କୁ ଊର୍ଦ୍ଧ୍ୱରେ ସଂକୀର୍ଣ୍ଣ ଗଳି ମଧ୍ୟରେ ବାଧ କରି ପୂରାନ୍ତେ ଧୂମନାଳୀର ତୀକ୍ଷ୍ଣଧାରମାନ ବାଜି ସେମାନଙ୍କର ଦେହ କ୍ଷତବିକ୍ଷତ ଓ ଅଳନ୍ଧୁ ବାଜି କ୍ଷତସବୁ ଦୂଷିତ ହୋଇ ଯାଉଥିଲା ।

ନାନାପ୍ରତିବନ୍ଧକ ସତ୍ତ୍ୱେ ଶାଫ୍ଟ୍ସ୍‌ବରୀ ଏହି ବାଳକମାନଙ୍କ ପାଇଁ ଶେଷ ପର୍ଯ୍ୟନ୍ତ ଲଢ଼ିଥିଲେ ଏବଂ ଆଜ ଯେ ଶିଶୁକୁ ଧୂମନାଳୀ ପରିଷ୍କାର କରିବାକୁ ପଠେଇବା ଇଂଲଣ୍ଡରେ ଆଇନ-ବିରୁଦ୍ଧ ଓ ଦଣ୍ଡନୀୟ, ଏହା ଶାଫ୍ଟ୍ସ୍‌ବରୀ କରିଯାଇ ଅଛନ୍ତି ।

ଶାଫ୍ଟ୍ସ୍‌ବରୀଙ୍କ କରୁଣାର ଧାରା ବର୍ତ୍ତମାନ ଅନ୍ୟଆଡ଼େ ପ୍ରବାହିତ ହେବାକୁ ଲାଗିଲା । ଏହି ସମୟରେ କୋଇଲାଖଣିରେ କାମ କରୁଥିବା ବାଳକମାନଙ୍କର ଜୀବନ ବର୍ଣ୍ଣନା କରି ଏକ ଲେଖା ପ୍ରକାଶିତ ହେଲା । ଭୂପୃଷ୍ଠର ତଳକୁ ଖସି ସଙ୍କୀର୍ଣ୍ଣ ପଥ ଦେଇ ଘୋର ଅନ୍ଧକାରମୟ ନାରକୀୟ ପାତାଳପୁରୀରେ ପ୍ରବେଶ କଲେ ଯାଇ କୋଇଲାଖଣି—ଏହିପରି ସ୍ଥାନରେ ଛୋଟ ଛୋଟ ପିଲାଙ୍କୁ ଭର୍ତ୍ତି କରି ସମସ୍ତ ସପ୍ତାହରେ କେବଳ ରବିବାର ଦିନ ବାହାରକୁ ଆସିବାକୁ ଅନୁମତି ଦିଆଯାଉଥିଲା । ଗମନାଗମନର ପଥ ଏତେ ସଙ୍କୀର୍ଣ୍ଣ ଯେ; ପିଲାଗୁଡ଼ିକ କେବଳ ଗୁରୁଣ୍ଡି ଗୁରୁଣ୍ଡି ଯିବା ଆସିବା କରିପାରୁଥିଲେ । ସେହି ଅବସ୍ଥାରେ ପୁଣି ସେମାନଙ୍କୁ କୋଇଲାଗାଡ଼ି ସବୁକୁ ଅଣ୍ଟାରେ ଦଉଡ଼ି ଲଗାଇ ପଛରେ ଭିଡ଼ି ଭିଡ଼ି ବା କୋଇଲା ବୋଝସବୁକୁ ଦୃଢ଼ଭାବରେ ପିଠିରେ ବାନ୍ଧି ଅତି କଷ୍ଟରେ ନେବା ଆଣିବାକୁ ହେଉଥିଲା ।

ଶାଫ୍ଟ୍ସ୍‌ବରୀ ନିଜ ଆଖିରେ ସବୁ କଥା ଦେଖି ଆସିବା ପାଇଁ କୋଇଲା ଖଣିସବୁ ପରିଦର୍ଶନ କରିବାକୁ ବାହାରିଲେ ଏବଂ ଯାହା ଦେଖିଲେ, ସେଥିରେ ସେ ସ୍ତମ୍ଭୀଭୂତ ହୋଇପଡ଼ିଲେ । ସେ ଏ ସମ୍ବନ୍ଧରେ ସରକାରଙ୍କ ପକ୍ଷରୁ ଗୋଟାଏ ଅନୁସନ୍ଧାନ ହେବାପାଇଁ ତୀବ୍ର ଦାବୀ କଲେ । ସରକାରୀ ଅନୁସନ୍ଧାନ ହେଲା

ଏବଂ ତାହାର ଫଳରେ କୋଇଲାଖଣିରୁ ଯେଉଁ ବିଭୀଷିକାମୟ ଚିତ୍ର ପ୍ରକାଶିତ ହେଲା, ତାହା ପାଠ କରି ଇଂଲଣ୍ଡର ଗୃହେ ଗୃହେ କ୍ରୋଧତରଙ୍ଗ ସୃଷ୍ଟି ହେଲା । ସଙ୍ଗେ ସଙ୍ଗେ ନୂତନ ନିୟମମାନ ପ୍ରଣୀତ ହୋଇ କୋଇଲାଖଣିର ହତଭାଗ୍ୟ ବାଳକମାନଙ୍କ ଜୀବନକୁ ସ୍ୱଚ୍ଛନ୍ଦ କରିବାର ଚେଷ୍ଟା ହେଲା ।

ବର୍ତ୍ତମାନ ମହାନୁଭବ ଶାଫ୍‌ଟ୍‌ସ୍‌ବରୀ ଲଣ୍ଡନ ନଗରରେ ପଥଭ୍ରଷ୍ଟ ବିପଥଗାମୀ ବାଳକମାନଙ୍କର ଦୁର୍ଦ୍ଦଶା ଘୋଚାଇବା ନିମନ୍ତେ ଲାଗିପଡ଼ିଲେ । ସେତେବେଳେ ଲଣ୍ଡନର ଅପ୍ରଧାନ ଗଳିମାନ ଚୋର ତସ୍କରମାନଙ୍କର ଲୀଳାଭୂମି ହୋଇଯାଏ । ପଥପାର୍ଶ୍ୱର ଗୃହମାନଙ୍କରେ ଗୁପ୍ତଗୃହ ଓ ଗୁପ୍ତଦ୍ୱାର ଦେଇ, କତୁଆଳର ଦୃଷ୍ଟି ଏଡ଼ି ନାନା ବିଭତ୍ସ କାଣ୍ଡ ବରାବର ଘଟୁଥାଏ । ସରଳପ୍ରକୃତିକ ଯାତ୍ରୀ ଓ ପଥିକମାନଙ୍କୁ ଏହି ଗୃହ ଭିତରକୁ ଭୁଲାଇ ନେଇ ସେମାନଙ୍କର ସର୍ବସ୍ୱ ଅପହରଣ କରି ଶେଷରେ ପ୍ରାଣ ମଧ୍ୟ ତସ୍କରମାନେ ନେଇ ଯାଉଥିଲେ ଏବଂ ଆହୁରି ବୀଭତ୍ସତାର କଥା ଏହି ଯେ, ଜଘନ୍ୟ ବ୍ୟବସାୟରେ ନୈପୁଣ୍ୟଲାଭ କରି ଜୀବିକାର୍ଜନ କରିବାପାଇଁ ବାଲ୍ୟକାଳରୁ ଅନେକ ବାଳକବାଳିକା ଦୀକ୍ଷିତ ଓ ଶିକ୍ଷିତ ହେଉଥିଲେ । ଏହି ବିପଥଗାମୀ ବାଳକବାଳିକାମାନଙ୍କୁ ସତ୍‌ମାର୍ଗକୁ ଆଣି ସଦୁପାୟରେ ଜୀବିକାର୍ଜନ ଶିଖାଇବା ଲାଗି ଶାଫ୍‌ଟ୍‌ସ୍‌ବରୀ ତସ୍କରସେବିତ ଏକ ଅଞ୍ଚଳରେ ଗୋଟିଏ ବିଦ୍ୟାଳୟ ପ୍ରଥମେ ସ୍ଥାପନ କଲେ । ଶିକ୍ଷା ରବିବାରରେହିଁ ଦିଆ ଯାଉଥିଲା ଏବଂ ଶିକ୍ଷକଙ୍କୁ ରାସ୍ତାମାନଙ୍କରୁ ଛାତ୍ର ସଂଗ୍ରହ କରି ଆଣିବାକୁ ହେଉଥିଲା । ପ୍ରଥମେ ଏହି ପଥଭ୍ରାନ୍ତମାନଙ୍କୁ ସମ୍ଭାଳିବା ବିଷମ ବ୍ୟାପାର ହେଲା । ସେମାନଙ୍କର

ଜୀବନ ନଗରର ରାସ୍ତା ଉପରେ, ନଗରଜୀବନର ସକଳ ଆବର୍ଜନା ମଧ୍ୟରେ ବର୍ଦ୍ଧିତ ହୋଇଥିଲେ । ସେମାନେ ଭଦ୍ରବ୍ୟବହାର କରିବା, ଭଦ୍ରକଥା କହିବା, ଶାନ୍ତ-ଶିଷ୍ଟ ହେବା ଆଦୌ ଜାଣି ନ ଥିଲେ । କିନ୍ତୁ ଶିକ୍ଷକମାନଙ୍କର ଅଦମ୍ୟ ଚେଷ୍ଟାରେ ସେମାନଙ୍କର ଜୀବନଗତି କ୍ରମେ କ୍ରମେ ପରିବର୍ତ୍ତିତ ହେବାକୁ ଲାଗିଲା ଏବଂ ଅନେକେ ପୂର୍ବର ପଙ୍କିଳ ପଥ ପରିତ୍ୟାଗ କରି ନୂତନ ଜୀବନ ଆରମ୍ଭ କଲେ । ଶାଫ୍‌ଟ୍‌ସ୍‌ବରୀ ଉତ୍ସାହିତ ହୋଇ କ୍ରମେ ଏହିପରି ଅନେକ ବିଦ୍ୟାଳୟ ବସାଇଗଲେ ।

ସମସ୍ତ ଜୀବନ ପରୋପକାର ଓ ସାଧୁକର୍ମରେ ବ୍ୟୟ କରି ମହାପ୍ରାଣ ଶାଫ୍‌ଟ୍‌ସ୍‌ବରୀ କ୍ରମେ ବୃଦ୍ଧ ହୋଇ ପଡ଼ିଲେ । ମୃତ୍ୟୁଶଯ୍ୟା ଗ୍ରହଣ କଲାବେଳକୁ ତାଙ୍କୁ ୮୪ ବର୍ଷ ବୟସ । ଜୀବନଯାକ କର୍ମ କରି କରି ବାର୍ଦ୍ଧକ୍ୟରେ ଶାନ୍ତି ପାଇବାପାଇଁ ସେ ବ୍ୟାକୁଳ ଥିବେ ବୋଲି କେହି କେହି ଅନୁମାନ କରିପାରନ୍ତି । କିନ୍ତୁ ଶାଫ୍‌ଟ୍‌ସ୍‌ବରୀ ଶାନ୍ତି ବା ବିଶ୍ରାମ ଇଚ୍ଛା କରୁ ନ ଥିଲେ । ସେ ଇଚ୍ଛା କରୁଥିଲେ, ଯେପରି ଅହରହ ପରୋପକାରରେ ନିଜକୁ ନିୟୋଜିତ କରନ୍ତେ । ଏଥିପାଇଁ ମୃତ୍ୟୁଶଯ୍ୟାରେ ସେ କହିଥିଲେ, 'ଜଗତର ଏତେ ଦୁଃଖ ଆଖିରେ ଦେଖି, ଏହା ଛାଡ଼ିବା ମୋ ପକ୍ଷରେ ଅସହ୍ୟ ହେଉଅଛି ।'

ଯେତେବେଳେ ତାଙ୍କର ଶବ ଓ୍ୱେଷ୍ଟ୍‌ମିନିଷ୍ଟର ଆଡ଼କୁ ମହାସମାରୋହରେ ନୀତ ହୋଇଥିଲା, ତାଙ୍କ ଦ୍ୱାରା ଉପକୃତ ସହସ୍ର ସହସ୍ର ନରନାରୀ ତାଙ୍କର ଶେଷ ଚିହ୍ନକୁ ସମ୍ମାନ ଦେଖାଇବା ନିମିତ୍ତ କୃଷ୍ଣବର୍ଣ୍ଣ ଚିହ୍ନ ଧାରଣ କରି ରାସ୍ତାର ଦୁଇ ପାର୍ଶ୍ୱରେ ବହୁ ଦୂରଯାଏ ଠିଆହୋଇ ରହିଥିଲେ । ତାଙ୍କ

ସମ୍ବନ୍ଧରେ କେହି କହୁଛନ୍ତି, 'ସେ ନାସ୍ତିକ୍ୟ ପିତୃମାତୃହୀନ, ଶ୍ରମୁଦ୍ୟମାନ ବାଳକଙ୍କର ଶରଣ, ଅନ୍ଧର ଚକ୍ଷୁ, ଖଞ୍ଜର ପଦ ଏବଂ ଦରିଦ୍ରର ପିତା ଥିଲେ ।'

## ପ୍ରଶ୍ନ

୧ । ଲର୍ଡ଼ ଶାଫ୍‌ଟ୍‌ସ୍‌ବରୀଙ୍କ ସମୟରେ କଳମାଲିକମାନେ ସେମାନଙ୍କ ବାଳକ କର୍ମଚାରୀମାନଙ୍କୁ କି ପ୍ରକାର ବ୍ୟବହାର କରୁଥିଲେ ? ଏହି ବ୍ୟବହାର ନେଇ କାହିଁକି କେହି ଆପତ୍ତି କରୁ ନ ଥିଲେ ?

୨ । ବୃଦ୍ଧା ଧାତ୍ରୀଙ୍କ ଦ୍ୱାରା ଲର୍ଡ଼ ଶାଫ୍‌ଟ୍‌ସ୍‌ବରୀ କି ଭାବରେ ପୁରସ୍କୃତ ହୋଇଥିଲେ ?

୩ । କୋଇଲାଖଣି ଓ କଳ-ବାଳକ (ଶ୍ରମିକ) ମାନଙ୍କ ପାଇଁ ସେ କି ପ୍ରକାର ସୁବନ୍ଦୋବସ୍ତ କରିଥିଲେ, ବର୍ଣ୍ଣନ କର ।

୪ । ନିମ୍ନଲିଖିତ ଶବ୍ଦମାନଙ୍କର ଅର୍ଥ କହି ବାକ୍ୟରେ ବ୍ୟବହାର କର:—ଅଭିବୃଦ୍ଧି, କାଳାନ୍ତକ, ଦାତବ୍ୟ, ଶ୍ରମନିଷ୍ପେଷିତ, ସ୍ୱାର୍ଥାନ୍ଧ, ଉତ୍କ୍ଷୋଳ-କୋଳାହଳ, ନିର୍ଭୀଷିକା, ବୀଭତ୍ସକାଣ୍ଡ, ଖଞ୍ଜ ।

୫ । ସନ୍ଧିବିଚ୍ଛେଦ କର:—

କାଳାନ୍ତକ, ଆବିଷ୍କୃତ, କୋମାଳାଙ୍ଗ, ଅଗ୍ନ୍ୟୁତ୍ପାତ, ସ୍ୱାର୍ଥାନ୍ଧ; ଜୀବିକାର୍ଜନ ।

———

# ଶକ୍ତି ଓ ସାହସ

ମାହମୁଦ୍ ସୋମନାଥ ମନ୍ଦିର ଆକ୍ରମଣ କଲାବେଳେ ପଣ୍ଡାମାନେ ମନ୍ଦିର ଭିତରେ ଶିବଲିଙ୍ଗଙ୍କୁ ଧରି 'ହେ ! ପ୍ରଭୁ ରକ୍ଷା କର' ବୋଲି ବିଳାପ କରୁଥାନ୍ତି । ପଣ୍ଡାମାନଙ୍କ ବିଳାପ ଦେବତା ଶୁଣିଲେ ନାହିଁ ବା ଶୁଣି କାର୍ଯ୍ୟ କରିବାର ଶକ୍ତି ତାଙ୍କଠାରେ ନ ଥିଲା । ମାହମୁଦ୍ ଅକ୍ଲେଶରେ ମନ୍ଦିର ଧ୍ୱଂସ କରି ଧନରତ୍ନ ଲୁଟିକରି ଚାଲିଗଲେ ।

ଜୀବନର ସକଳ କର୍ମରେ ସମସ୍ତ ସମସ୍ୟାର ସମାଧାନ ପାଇଁ ଯେଉଁମାନେ ଦେବତା, ମନ୍ତ୍ରଯନ୍ତ୍ର, ଯାଗ-ଯଜ୍ଞ ଉପରେ ଏକାନ୍ତ ନିର୍ଭର କରନ୍ତି; ସେମାନଙ୍କ ପ୍ରତି ଭାଗ୍ୟଦେବୀ ପ୍ରସନ୍ନା ହେବାର କୌଣସି କାରଣ ନାହିଁ । ସୋମନାଥର ପଣ୍ଡାମାନଙ୍କ ପରି ଜୀବନଯୁଦ୍ଧରେ ସେମାନଙ୍କ ପରାଜୟ ଓ ଲାଞ୍ଛନା ସୁନିଶ୍ଚିତ । ଯେଉଁମାନେ ଆତ୍ମଚେଷ୍ଟାରେହିଁ ନିର୍ଭରଶୀଳ, ଯେଉଁମାନେ ଆପଣାର ଶକ୍ତି ଓ ସାହାସକୁ ବେଶି ମୂଲ୍ୟ ଦିଅନ୍ତି; ସେମାନେ ମାହମୁଦ୍‌ଙ୍କ ପରି ଜୀବନଯୁଦ୍ଧରେ ହେବେ ଦୁର୍ଦ୍ଧର୍ଷ ବିଜୟୀ ।

ମନୁଷ୍ୟକୁ ଜନ୍ମ ଦେଲାବେଳେ ତା'ର ଇହଜଗତରେ ସୁଖସ୍ୱାଚ୍ଛନ୍ଦ୍ୟରେ ଚଳିବା ପାଇଁ ଯାହା ଦରକାର, ତାହା ବିଧାତା ଦେଇଥାଏ । ହସ୍ତ, ପଦ; ଚକ୍ଷୁ, କର୍ଣ୍ଣ ପ୍ରଭୃତି ଇନ୍ଦ୍ରିୟ, ବୁଦ୍ଧି-ବିବେକ, ଏଇସବୁ ବିଧାତାଙ୍କର ଅପୂର୍ବ ଦାନ । ଏ ସବୁର ସମୁଚିତ ପ୍ରୟୋଗ ନ କରି ପୁଣି ବିଧାତାଙ୍କଠାରୁ ସାହାଯ୍ୟ ଆଶା କରିବା ଯେପରି ଅପ୍ରାସଙ୍ଗିକ, ସେହିପରି କ୍ଷତିକାରକ ।

ଜଗତର ସର୍ବତ୍ର ଯେଉଁମାନେ ଭାଗ୍ୟବାଦୀ, ଯେଉଁମାନଙ୍କର ଦେବକୃପାମାତ୍ର ଆଶ୍ରୟ, ସେମାନେ ଦୀନ ଦରିଦ୍ର, ଲାଞ୍ଛିତ ଓ ପରପଦାନତ । ଯେଉଁମାନେ ଆତ୍ମବିଶ୍ୱାସୀ, କର୍ମଠ, ଶକ୍ତିମାନ୍ ଓ ସାହାସିକ, ସେମାନେ ଜୀବନଯୁଦ୍ଧରେ ଜୟୀ, ସେମାନେ ସୁଖସ୍ୱାଚ୍ଛନ୍ଦ୍ୟରେ ଜୀବନ ଉପଭୋଗ କରି ବଞ୍ଚିଥାନ୍ତି ।

ଆମଦେଶରେ ଦୈବୀକୃପାର ପ୍ରଭାବ ଅତ୍ୟଧିକ । ଜୀବନର ସାମାନ୍ୟତମ ଘଟଣା ପାଇଁ ଅତି ଉଚ୍ଚ ଶିକ୍ଷିତ ଲୋକେ ମଧ୍ୟ କହିବାର ଶୁଣାଯାଏ ଯେ 'ଭାଗ୍ୟରେ ଯାହା ଥିବ' । ଆତ୍ମ-ଚେଷ୍ଟାହିଁ ଯେ ନିଜର ଭାଗ୍ୟ, ଏ ଧାରଣା ଲୋକଙ୍କ ମନରେ ନାହିଁ । ଅନୁସନ୍ଧାନ, ଆଲୋଚନା, ପରୀକ୍ଷା ଏବଂ ବିଫଳତା ସତ୍ତ୍ୱେ ବାରମ୍ବାର ଚେଷ୍ଟାରେ ନିଜର, ଘରର, ଗ୍ରାମର ଓ ଦେଶର ଜୀବନପ୍ରଣାଳୀର ଯେ ଅକଳ୍ପନୀୟ ପରିବର୍ତ୍ତନ ହୋଇପାରେ, ତାହା ଆମ ଅଧିକାଂଶଙ୍କ ଧାରଣାର ଅତୀତ । ଗ୍ରାମରେ ସଂକ୍ରାମକ ରୋଗ ଆରମ୍ଭ ହୋଇଗଲେ, ଗାଁର ପାଣି ପବନ, ଦାଣ୍ଡଘାଟ, ଘରବାଡ଼ି କିପରି ସଫାସୁତରା ରହିବ, କିପରି ଡାକ୍ତର ଆସିବେ, କିପରି ରୋଗୀମାନଙ୍କର ସେବା ହେବ, ଏସବୁ କଥା ମନକୁ ନ ଆଣି ଆମ୍ଭଲୋକେ ଯିବେ ଠାକୁରାଣୀଙ୍କଠି କୁକୁଡ଼ା ବଳି ଦେବାକୁ ବା ଗୁଣିଆ ଡାକିବାକୁ । ଏପରି ଯେଉଁମାନେ କରନ୍ତି, ସେମାନେ ବିଧାତା ଦେଇଥିବା ଅପୂର୍ବ ଦୈହିକ ଓ ମାନସିକ ଶକ୍ତିଗୁଡ଼ିକର କୌଣସି ଉପଯୋଗ ନ କରି ପଶୁ ସ୍ତରରେହିଁ ରହିଥିବାର ଯେ ପ୍ରମାଣ କରନ୍ତି, ଏଥିରେ ସନ୍ଦେହ ନାହିଁ । ବିଧାତା ମନୁଷ୍ୟକୁ ପୃଥିବୀକୁ ପଠାଇଛନ୍ତି ଜୀବନର ଦୁଃଖ, ବ୍ୟାଧି, ଦୁର୍ଦ୍ଦଶା ଓ ନାନା ପ୍ରଲୋଭନ ଆଦି ସହିତ ଅନବରତ ସଂଗ୍ରାମ କରି ନରତ୍ୱର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଏବଂ ପୃଥିବୀକୁ ସମୃଦ୍ଧିମନ୍ତ କରିବାପାଇଁ ।

କୌଣସି ଗୋଟିଏ କାମର ଦାୟିତ୍ୱ ନେଇ ଟିକିଏ କଷ୍ଟ ପଡ଼ିଲେ ତାକୁ ଛାଡ଼ିଦେବା, କାମଟିକୁ ପରିପୂର୍ଣ୍ଣ ଭାବରେ ସମ୍ପାଦନ ନ କରି ଯଥାତଥା କରି ଥୋଇଦେବା କୁଶିକ୍ଷା ବା ଦୁର୍ବଳଚିତ୍ତର ଚିହ୍ନ । ଏପରି ଅଭ୍ୟାସ ଯାହାର, ସେ ଜୀବନର କୌଣସି କ୍ଷେତ୍ରରେ ଉନ୍ନତି କରିପାରିବାର ଆଶା କରାଯାଏ ନାହିଁ । ପ୍ରକୃତ ଶକ୍ତିମତ୍ତା ଓ ସୁଶିକ୍ଷାର ଚିହ୍ନ ହେଉଛି—ଯାହା ଦାୟିତ୍ୱ ବୋଲି ଗ୍ରହଣ କରାଗଲା, ଯେତେ କଠିନ ହେଉ ପଛେ ତାହାକୁ ସମସ୍ତ ଯତ୍ନ, ସମସ୍ତ ଚିନ୍ତା ଦେଇ ସୁସମ୍ପନ୍ନ କରିବା । ଜୀବନରେ ଉନ୍ନତି କରିପାରେ କେବଳ ଶକ୍ତିମାନ୍ ଏବଂ ଶକ୍ତିମାନ୍ ନିକଟରେ କଷ୍ଟକର ବା ଅସମ୍ଭବ ବୋଲି କିଛି ନାହିଁ । ନେପୋଲିୟନ କହୁଥିଲେ, 'ଅସମ୍ଭବ' ଏହି ଶବ୍ଦ କେବଳ ବୋକା ବା ମୂର୍ଖଙ୍କ ଅଭିଧାନରେ ମିଳିବ । ସେ ନିଜେ ତାଙ୍କର ଅଦମ୍ୟ ସାହାସ ଓ ଅପରାଜେୟ ଶକ୍ତି ବଳରେ ବହୁ କ୍ଷେତ୍ରରେ ଯାହା ଅସମ୍ଭବ ବୋଲି ସମସ୍ତଙ୍କୁ ବୋଧ ହେଉଥିଲା, ତାକୁ ବାସ୍ତବ ଓ ସମ୍ଭବ କରିଥିଲେ । ଇଟାଲୀ ଆକ୍ରମଣବେଳେ ନେପୋଲିୟନ୍ଙ୍କ ଆଗରେ ଲୋକେ ଅଭ୍ରଙ୍କଶ ଆଲପସ୍ ପର୍ବତ-ମାଳାର ଦୁରଧିଗମ୍ୟ ପ୍ରତିବନ୍ଧକର କଥା ଉଠାଇବାରୁ ସେ କହିଲେ, "ଆଲପସର ଅସ୍ତିତ୍ୱକୁ ଉଡ଼େଇ ଦେବ ଏବଂ ଅଶ୍ରୁତପୂର୍ବ ଯୋଜନା ଓ ପରିଶ୍ରମ ଫଳରେ ଯେଉଁ ଅଞ୍ଚଳ କେବେ ମନୁଷ୍ୟର ପଦ ଦେଖି ନ ଥିଲା, ସେହି ଅଞ୍ଚଳରେ ପ୍ରଶସ୍ତ ପଥ ନିର୍ମାଣ କରି ତାରି ଉପରେ ନିଜର ବିଜୟିବାହିନୀକୁ ଅବଲୀଳାକ୍ରମେ ଚଳାଇ ନେବ ।"

ମରେଙ୍ଗୋ ଯୁଦ୍ଧରେ ଏକ ପଟରେ ନେପୋଲିୟନ ଓ ଅନ୍ୟ ପଟରେ ଅଷ୍ଟ୍ରୀୟ ସେନା । ମଝିରେ ଗୋଟିଏ କ୍ଷୁଦ୍ର ନଦୀର

ପୋଲ । ପୋଲର ଆର ଏକ ଅଷ୍ଟ୍ରୀୟ କମାଣ ଅଜସ୍ର ଭାବରେ ଅଗ୍ନିବର୍ଷଣ କରୁଛି । ନେପୋଲିୟନ୍ ନିଜ ବାହିନୀକୁ ପୋଲ ଅତିକ୍ରମ କରି ଅଷ୍ଟ୍ରୀୟ ସେନାକୁ ଆକ୍ରମଣ କରିବାକୁ ଆଦେଶ ଦେଇ ସାରିଲେଣି; କିନ୍ତୁ ଶତ୍ରୁର ନିରବଚ୍ଛିନ୍ନ ଅଗ୍ନିବର୍ଷଣ ତଳେ ସଙ୍କୀର୍ଣ୍ଣ ପୋଲ ଉପରେ ଯିବାକୁ ସେନାପତିମାନେ ମଧ୍ୟ ଇତସ୍ତତଃ । କାରଣ ନିଜ ପକ୍ଷର ବହୁ ଜନକ୍ଷୟ ସୁନିଶ୍ଚିତ । କେହି ଶୁଣୁ ନାହାନ୍ତି ଦେଖି ଅକୁତୋଭୟ ନେପୋଲିୟନ ନିଜେ ଘୋଡ଼ାରୁ ତଳକୁ ଓହ୍ଲାଇ ଆସିଲେ ଏବଂ ଫରାସୀ ପତାକାକୁ ନିଜ ହାତରେ ଟେକି ଧରି ନିଜର ବାହିନୀକୁ ଡାକ ଦେଲେ— 'ମତେ ଅନୁସରଣ କର' ଏବଂ ସେ ପୋଲ ଆଡ଼କୁ ନିର୍ଭୀକ, ନିଶ୍ଚିତ ଭାବରେ ବୀରଦର୍ପରେ ପଦକ୍ଷେପ କଲେ । ଫରାସୀ ବାହିନୀରେ ବିଦ୍ୟୁତ୍ ଖେଳିଗଲା । ବୈଜୟନ୍ତୀକେତନ ହସ୍ତରେ ନେପୋଲିୟନ୍ ସୁସ୍ଥ ଶରୀରରେ ପୋଲର ଆରପାଖରେ ପହଞ୍ଚିଲେ । ପରେ ଉତ୍ସାହିତ ଫରାସୀ ସୈନ୍ୟ ସେହି ପୋଲ ଉପରେ ଗତି କରି ଅଷ୍ଟ୍ରୀୟମାନଙ୍କ ବିରୁଦ୍ଧରେ ବିପୁଳ ବିଜୟ ଲାଭ କଲେ ।

ଏଇ ଉଦାହରଣରୁ କେହି ଯେପରି ମନେ ନ କରନ୍ତି ଯେ, ସାହସ କେବଳ ଯୁଦ୍ଧକ୍ଷେତ୍ରରେ ପ୍ରଦର୍ଶିତ ହୋଇପାରେ, ଅନ୍ୟତ୍ର ନୁହେ । ସଙ୍କଟ ବେଳେ ଯାହା ସାହସ, ଦୈନନ୍ଦିନ ଜୀବନରେ ସେହି ଶକ୍ତି ପ୍ରକାଶ ପାଏ ଧୈର୍ଯ୍ୟରେ । ଏଇ ନୀରବ ସାହସିକ ଶକ୍ତିର ଏକ ପ୍ରକୃଷ୍ଟ ଦୃଷ୍ଟାନ୍ତ ଡକ୍ଟର ଲିଭିଂଷ୍ଟୋନ୍ । ଦରିଦ୍ର ଘରେ ଜାତ ହୋଇ ଓ ଜୀବନଯାକ ଦୁର୍ବଳ ସ୍ୱାସ୍ଥ୍ୟ ଥାଇ ମଧ୍ୟ ଲିଭିଂଷ୍ଟୋନ୍ ଧର୍ମପ୍ରଚାରକ

ଓ 'ଅନ୍ଧକାର-ମହାଦେଶ' ଆଫ୍ରିକାର ସର୍ବଶ୍ରେଷ୍ଠ ଆବିଷ୍କାରକ ଭାବରେ ଜଗତ ବିଖ୍ୟାତ ହୋଇଅଛନ୍ତି । ଲିଭିଂଷ୍ଟୋନ୍ ଏପରି ଦରିଦ୍ର ପରିବାରରେ ଜନ୍ମ ହୋଇଥିଲେ ଯେ, ଦଶ ବର୍ଷ ବୟସରୁ ତାଙ୍କୁ ଏ ଲୁଗାକଲରେ ଶ୍ରମିକଭାବରେ କାମ କରିବାକୁ ହୋଇଥିଲା । ଦୀର୍ଘ ୧୪ ବର୍ଷକାଳ କାରଖାନାରେ ଶ୍ରମିକ ଭାବରେ କାମ କରି ମଧ୍ୟ ଲିଭିଂଷ୍ଟୋନ୍ ଭବିଷ୍ୟତ ଗୌରବର ବୀଜ ସଂଗ୍ରହ-କରୁଥିଲେ । ଦିନଯାକ କାରଖାନାରେ ଖଟି ରାତିରେ ନିଜେ ନିଜେ ଲାଟିନ୍ ପଢ଼ୁଥିଲେ । ସମୟାଭାବରୁ ସେ କାରଖାନାକୁ ସାଙ୍ଗରେ ପୁସ୍ତକ ନେଇଯାନ୍ତି ଏବଂ ତାହାର କୌଣସି ଅଂଶରେ ବହି ମେଲାଇ ରଖି, ଫୁରସତ ହେଲେ ବାକ୍ୟ ପରେ ବାକ୍ୟ ପଢ଼ି ବିଦ୍ୟା ସଂଗ୍ରହ କରୁଥାନ୍ତି । ଛୁଟି ଦିନମାନଙ୍କରେ ଆଖପାଖର ନାନା-ବିଧ ଉଦ୍ଭିଦ ସଂଗ୍ରହ କରି ସେ ଉଦ୍ଭିଦବିଦ୍ୟାର ଚର୍ଚ୍ଚାକରୁଥିଲେ । ଆପେ ବିଜ୍ଞାନ, ସାହିତ୍ୟ, ଭ୍ରମଣ-କାହାଣୀ ଇତ୍ୟାଦି ଯାହା ହାତକୁ ଆସିଲା, ତାହା ଅଧ୍ୟୟନ କରି କ୍ରମେ ସେ ସ୍ଥିର କଲେ ଯେ, ସେ ଜଣେ ଖ୍ରୀଷ୍ଟୀୟ ମିସନାରି ହେବେ । ମିସନାରି ଭାବରେ ମାନବ ସେବା ପାଇଁ ଚିକିତ୍ସା ଜ୍ଞାନ ନିତାନ୍ତ ଦରକାର ମନେକରି ସେ ୨୪ । ୨୫ ବର୍ଷ ବୟସରେ ଚିକିତ୍ସାଶାସ୍ତ୍ରର ଚର୍ଚ୍ଚା ଆରମ୍ଭ କଲେ । ଏ ସମସ୍ତ କାମପାଇଁ ସେ କେବେହେଲେ କାହାଠାରୁ ଏକ ପଇସା ଭିକ୍ଷା କରି ନ ଥିଲେ । ଶ୍ରମିକ ଭାବରେ ତାଙ୍କର ଯାହା ଅର୍ଜ୍ଜନ, ତାଙ୍କର ସମସ୍ତ ଖର୍ଚ୍ଚ ସେଇଥିରୁ ହିଁ ଆସୁଥିଲା ।

ଆଫ୍ରିକାର ବେଚୁଆନାଲାଣ୍ଡରେ ଲିଭିଂଷ୍ଟୋନ୍ ପ୍ରଥମେ ମିସନାରୀ ଜୀବନ ଆରମ୍ଭ କଲେ । ଏଠାରେ ମିସନାରୀ କେନ୍ଦ୍ର-ମାନଙ୍କରେ ଏପରି କୌଣସି କାମ ନାହିଁ, ଯାହା ସେ କରୁ ନ

ଥିଲେ । କୃଷି କରିବା, ଘର ତିଆରି କରିବା, ରାସ୍ତା ଗଢ଼ିବା, ଜଙ୍ଗଲ ସଫା କରିବା, ପଢ଼ିବା, ଶିକ୍ଷା କରିବା, ପ୍ରତ୍ୟେକ କର୍ମରେ ସେ ଥିଲେ ଅଗ୍ରଣୀ । ମିସନାରି କର୍ମକ୍ଷେତ୍ର ବଢ଼ାଇବା ଉଦ୍ଦେଶ୍ୟରେ ଅଜ୍ଞାତ ଆଫ୍ରିକା ଭିତରକୁ ଯାଉଁ ଯାଉଁ ସେ କ୍ରମେ ବିଖ୍ୟାତ ଆବିଷ୍କାରକ ହୋଇଉଠିଲେ । ଏହି ଯାତ୍ରା ଭିତରେ



ଲିଭିଂଷ୍ଟୋନ୍

ଲିଭିଂଷ୍ଟୋନ୍ ଯେଉଁ ଧୈର୍ଯ୍ୟ, ଯେଉଁ ଦୃଢ଼ଚିତ୍ତତା, ସାହସ, କ୍ଲାନ୍ତିହୀନ କାୟିକ ଶ୍ରମ, ବିଚକ୍ଷଣ ବୁଦ୍ଧି ଓ ଉନ୍ନତ ମାନବିକ ଆଦର୍ଶ ଦେଖାଇ ଯାଇଅଛନ୍ତି, ତାହାର ତୁଳନା ନାହିଁ । ସେଥିପାଇଁ ସେଦିନର ସ୍କଟ୍‌ଲଣ୍ଡ ଦେଶସ୍ଥ ଲୁଗାକାରଖାନାର ସେହି କୁଲି ପିଲା ଆଜି ସମଗ୍ର ସଭ୍ୟଜଗତରେ ସମ୍ମାନିତ ।

## ପ୍ରଶ୍ନ

୧ । ନିମ୍ନଲିଖିତ ଶବ୍ଦମାନଙ୍କୁ ବାକ୍ୟରେ ପ୍ରୟୋଗ କର:— ଉପଗ୍ରହ, ଦୁର୍ଦ୍ଧର୍ଷ, ଅପ୍ରାସଙ୍ଗିକ, ଦୈବୀକୃପା, ଦୈହିକ, ପ୍ରତିପାଦକ, ଅଭ୍ରଂକଷ, ପ୍ରତିବନ୍ଧକ, ଅକୁତୋଭୟ, ଜୈନ ।

୨ । ଜୀବନ-ଯୁଦ୍ଧରେ ଜୟୀ ହେବାକୁ ହେଲେ ତୁମକୁ କେଉଁ କେଉଁ ସୁଗୁଣଗୁଡ଼ିକର ଆଦର କରିବାକୁ ହେବ ?

୩ । କେଉଁପ୍ରକାର ବ୍ୟକ୍ତି ଜୀବନରେ ଉନ୍ନତି କରିପାରନ୍ତି ନାହିଁ ?

୪ । ନେପୋଲିୟନ୍ କେଉଁ ଗୁଣ ଯୋଗୁଁ ବିଜୟଲାଭ କରିଥିଲେ ?

୫ । ସନ୍ଧି ବିଚ୍ଛେଦ କର:—ଦୁରବରୋହ, ଅବସ୍କାର, ସଂକୀର୍ଣ୍ଣ ।

---

## ନୂତନ କୃଷକ

ରାମକୃଷ୍ଣ ତାଙ୍କ ଗ୍ରାମର କେତେଜଣ ଭଦ୍ରଲୋକଙ୍କୁ ସହଯୋଗ ଆନ୍ଦୋଳନର ଉପକାରିତା ବୁଝାଇ ନିଜ ଗ୍ରାମରେ ଗୋଟିଏ ସହଯୋଗ ସମିତି ସ୍ଥାପନ କଲା ଏବଂ କୌଣସି ଲାଭଜନକ ଅଥଚ ଲୋକୋପକାରୀ ପନ୍ଥାରେ ଜୀବିକାର୍ଜ୍ଜନ ପାଇଁ କିଛି ଟଙ୍କା ମଧ୍ୟ ସମିତିରୁ ଧାର ଆଣିଲା । ଏଣେ ବନ୍ଧୁ ଚନ୍ଦ୍ରଶେଖର ତାଙ୍କ ଗ୍ରାମରେ ଉପସ୍ଥିତ ହୋଇ ଧାର ଟଙ୍କାରେ ସେ କ'ଣ କରିବାକୁ ଯାଉଛି, ଏହା ବୁଝି ବସିଲା ଏବଂ ଗାଁଆରେ ଗୋଟିଏ ଗୁଡ଼କଳ କିମ୍ବା ତେଲକଳ ବା ଆଉ କିଛି ଗୋଟିଏ କଳ ବସାଇବାକୁ ତାକୁ ପ୍ରବର୍ତ୍ତାଇଲା । କିଛି ଗୋଟିଏ କଳ-କାରଖାନା ଆରମ୍ଭ କଲେ, ନିଜେ ଚନ୍ଦ୍ରଶେଖର ଅର୍ଥ

ସାହାଯ୍ୟ କରିବ ବୋଲି ମଧ୍ୟ ପ୍ରକାଶ କଲା । କିନ୍ତୁ ରାମକୃଷ୍ଣ କୌଣସି ପ୍ରକାର କଳ-ବ୍ୟବସାୟ ଆରମ୍ଭ କରିବାକୁ ଏକାବେଳକେ ଅନିଚ୍ଛୁକ ହେବାର ଦେଖାଗଲା । ଚନ୍ଦ୍ରଶେଖର କହିଲା, 'ଦେଖ, କଳ-କାରଖାନା ଯୋଗୁଁ ଇଉରୋପ,ଆମେରିକା ଜାପାନ ପ୍ରଭୃତି ଦେଶ ଆମ ଲୋକଙ୍କ ଅଣ୍ଟାରୁ ଟଙ୍କା କାଢ଼ି-ନେଇ ନିଜକୁ ଧନୀ ଓ ଆମକୁ ଗରିବ କରି ଦେଉଛନ୍ତି । ଆମେ ଯଦି ନିଜେ କଳକାରଖାନା ଚଳାନ୍ତେ, ସେମାନେ ଆମ ଦେଶରେ ପଶନ୍ତେ କାହିଁକି ? ଜାପାନ ଗୋରାମାନଙ୍କଠାରୁ ଏହି ବିଦ୍ୟାଗୁଡ଼ିକ ଶିଖି ସେଗୁଡ଼ିକ ଏମିତି ଭାବରେ କାମରେ ଲଗାଇଲା ଯେ, ଏବେ ଗୋରାମାନେ ବି ତାକୁ ଡରିଲେଣି । ଆମେ ସେମିତି ନ କରିବା କାହିଁକି ?' ରାମକୃଷ୍ଣ ଉତ୍ତର ଦେଲା,''ଏ ଯେଉଁ ଧନ-ସମ୍ପଦର ଆଡ଼ମ୍ବର ତୁମେ ପାଶ୍ଚାତ୍ୟ ଦେଶମାନଙ୍କରେ ଦେଖୁଛ, ଏହା କେବଳ ବାହାରକୁ । ଭିତରର ଜଘନ୍ୟ ଅବସ୍ଥା ଆମ ଆଖିରେ ପଡ଼େ ନାହିଁ । ଆଜିକାଲି ପ୍ରତ୍ୟେକ ଇଉରୋପୀୟ ଦେଶରେ ଲକ୍ଷ ଲକ୍ଷ ଲୋକ ଅକର୍ମା ହୋଇ ବସିଛନ୍ତି । ଅନ୍ୟ କିଛି କାମ ନ ଥିବାରୁ ଆମେରିକା ପ୍ରଭୃତି ଦେଶରେ ଲୋକେ ଘୋର ଡକାଏତିରେ ଏପରି ମାତିଲେଣି ଯେ,ସେ ଦେଶରେ ଧନ-ଜୀବନ ଦିନକୁ ଦିନ ଅସ୍ଥିର ହୋଇ ଉଠୁଛି । ତୁମେ କ'ଣ କଳ-କାରଖାନା ସବୁ ବସାଇ ଆମ ଦେଶରେ ଏହି ଭୟାବହ ଅବସ୍ଥା ସୃଷ୍ଟି କରିବାକୁ ଚାହଁ ? ଜଗତର ଚାରିଆଡ଼େ ଆଜି ଅକର୍ମା-ସମସ୍ୟା ପ୍ରବଳ ହୋଇ ଉଠୁଛି । ଏହାର ମୂଳରେ ଏହି କଳ-ଦୈତ୍ୟର ପ୍ରଭାବ ଏବଂ ଏହାର ଫଳ ଅଶାନ୍ତି, ଯୁଦ୍ଧ ଓ ସଭ୍ୟତାର ଲୋପ । ବିଜ୍ଞାନ ଓ କଳଯୋଗୁଁ ଆଧୁନିକ ମନୁଷ୍ୟ ଅନେକ ଉପକୃତ ହୋଇଛି ସତ୍ୟ, କିନ୍ତୁ ଅପକାରଯାକ ଭୁଲିଯିବା ଉଚିତ ହେବ କି ?

କଳକାରଖାନା ଆରମ୍ଭ ହେବାର ଏହି ତ ମୋଟେ ଶହେ ବର୍ଷ ହୋଇଛି । ତା'ର ବିଷମୟ ଫଳ ମର୍ମ ସ୍ପର୍ଶୀରୂପେ ମନୁଷ୍ୟ ଜାଣି ପାରି ନାହିଁ । ଯାହା କିଛି ଦୁର୍ଗୁଣ ଦେଖାଯାଉଛି, ତାହା ଆରମ୍ଭ ମାତ୍ର । କିନ୍ତୁ ଆଜିଠାରୁ ସତର୍କ ନ ହେଲେ ମନୁଷ୍ୟର ଭବିଷ୍ୟତ ଅନ୍ଧକାରମୟ ହେବ । ଆମ୍ଭେମାନେ ଇଂଲଣ୍ଡ ବା ଅନ୍ୟାନ୍ୟ ଇଉରୋପୀୟ ଦେଶର ବାହ୍ୟ ମହିମାରେ ସ୍ତମ୍ଭିତ ହୋଇ ଏହିସବୁ ଅନୁକରଣ କରିବାକୁ ଯାଉଛୁଁ; କିନ୍ତୁ ଆମେ ଭୁଲିଯାଉଁ ଯେ, ସେ ଦେଶର ଚିନ୍ତାଶୀଳ ଲୋକମାନେ ଏହି କଳ-କାରଖାନା ବିରୁଦ୍ଧରେ ତୀବ୍ର ଲେଖାସବୁ ଲେଖିଯାଇଛନ୍ତି । ତା'ର କାରଣ ଏହି ଯେ, କଳକାରଖାନା ମନୁଷ୍ୟ-ହାତରୁ କାମ ନେଇଯାଇ ତା'ର ଅନେକ ଐଶ୍ୱରିକ ଶକ୍ତି ନଷ୍ଟ କରିଦିଏ; ଅସଂଖ୍ୟ ଲୋକଙ୍କୁ ଅକର୍ମା କରି ରଖେ, ଦେଶର ଲକ୍ଷ୍ମୀଙ୍କୁ ଅଳ୍ପ କେତୋଟି ଲୋକଙ୍କ ଲୌହସିନ୍ଦୁକରେ ବନ୍ଦିନୀ କରି ଜନସାଧାରଣଙ୍କୁ ଦରିଦ୍ର କରେ ଏବଂ ଜୀବନରୁ ନୈସର୍ଗିକ ପ୍ରଭାବ କାଢ଼ି ନେଇ ତାକୁ କୃତ୍ରିମ ଓ ବିକଳ କରି ଦିଏ । କଳକାରଖାନାର ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ଏହି ଦୁର୍ଗୁଣସବୁ ସେ ଦେଶମାନଙ୍କରେ ଘଟି ଯାଇଛି ଓ ଘଟୁଛି । ଆମେ କ'ଣ କଳକାରଖାନା ବସାଇ ଏହିସବୁ ଦୁଷ୍ଟ ଭାବକୁ ବରଣ କରି ଆଣିବା ? ବିଲାତରେ ଲୁଗାକଳ ଆରମ୍ଭ ହୋଇ ଭାରତର ତନ୍ତୀକୁଳ ଏକାବେଳକେ ଧ୍ୱଂସପ୍ରାପ୍ତ ହେଲେ । ଭାରତରେ ଲୁଗାକଳ ମଧ୍ୟ ସେ ଧ୍ୱଂସରୁ ରକ୍ଷା କରିପାରି ନାହିଁ; ତାହା କୋଟୋଟି ଭାରତୀୟଙ୍କୁ କୋଟିପତି କରିଛି ମାତ୍ର । କିନ୍ତୁ ତା'ଦ୍ୱାରା ଦରିଦ୍ର ଜନ-ସାଧାରଣର କିଛି ଲାଭ ହୋଇଛି କି ? ତନ୍ତୀମାନଙ୍କ ଘରେ

ଅନ୍ୟ ବ୍ୟବସାୟୀମାନେ ମଧ୍ୟ ଏହି କଳ ଯୋଗୁଁ ବର୍ତ୍ତମାନ ଧ୍ୱଂସମୁଖରେ । ଦେଶର ଘରେ ଘରେ କୁଟୀରଶିଳ୍ପ ପୂର୍ବେ ଚାଲୁଥିଲା, ସମାଜରେ ଧନ ସମଭାବରେ ବାଣ୍ଟି ହୋଇ ରହୁଥିଲା ଓ ପାରସ୍ପରିକ ବନ୍ଧନସୂତ୍ରରେ ସମାଜରେ ସଦ୍ଭାବ ଓ ଶାନ୍ତି ବିରାଜିତ ଥିଲା, କେହି ଅକର୍ମା ରହୁ ନ ଥିଲେ ବା କେହି ସହସ୍ର ଲୋକର କାମ ଏକା କରି, ସମସ୍ତଙ୍କ ଅଣ୍ଟାରେ ପଇସା ଗୋଟାଗୋଟି କରି ନିଜ ଗାଣ୍ଡିଆ ମୋଟା କରି ପାରୁ ନ ଥିଲା । ଆଜି କିନ୍ତୁ ସମାଜରେ କି ବୈଷମ୍ୟ ଦେଖୁଛ କହିଲ ? ଧନ ଓ ଦାରିଦ୍ର୍ୟ ମଧ୍ୟରେ ଭୀଷଣ ବ୍ୟବଧାନ ଗଢ଼ିଉଠୁଛି, ଦେଖିଲ ? ଏ ସମସ୍ତ ମୂଳରେ କଳ ସଭ୍ୟତା—ଜଗତର ସକଳ ଅଶାନ୍ତିର ମୂଳରେ ଏହି କଳ । କଳ ମନୁଷ୍ୟର କ୍ରୀତଦାସ ହୋଇ ତାର ପରିଶ୍ରମ ଲାଘବ କରିବା ପାଇଁ ଆବିଷ୍କୃତ ହୋଇଥିଲା ସତ୍ୟ; କିନ୍ତୁ ବର୍ତ୍ତମାନ ମନୁଷ୍ୟ କଳର କ୍ରୀତଦାସ । କଳହିଁ ଜାତି ଭିତରେ ଘୋର ଯୁଦ୍ଧ ବଧାଇ ଏକ ଅପରକୁ ଗ୍ରାସ କରିବାକୁ ପ୍ରେରଣା ଦେଉଛି । ନଚେତ୍ ମନୁଷ୍ୟ ଏ ଦୁଃସାହସ କରନ୍ତା ନାହିଁ । କଳ ଆଜି ଦଶମୁଖ ରାବଣ ପରି ସମସ୍ତ ପୃଥିବୀକୁ ତା'ର ନିର୍ମମ ଓ ଦୃପ୍ତ ପ୍ରଭାବରେ ସ୍ତମ୍ଭୀଭୂତ କରିବାକୁ ବସିଛି । ବାୟୁ, ଆକାଶ, ଅଗ୍ନି, ବିଦ୍ୟୁତ୍, ବରୁଣ ପ୍ରଭୃତି ଦେବତାମାନେ ଆଜି ରାବଣ ପରି କଳର ମଧ୍ୟ କ୍ରୀତଦାସ ଏବଂ ରାବଣ ପରି କଳାସୁର ଆଜି ଜଗତକୁ ନିଷ୍ପୀଡ଼ନ କରିବାରେ ସେମାନଙ୍କୁ ନିଯୋଗ କରାଉଅଛି ମାତ୍ର ।"

ଚନ୍ଦ୍ରଶେଖର କହିଲା—ତୋର ଏ ପ୍ରକାର ବକ୍ତୃତା ଦେବାର ପ୍ରବୃତ୍ତି ମୁଁ ତ ବରାବର ଦେଖିଛି । ଏବେ ତୁ କଣ କରିବାକୁ ଯାଉଛୁ ସିଧା କହିଲୁ ?

ରାମକୃଷ୍ଣ ଉତ୍ତର କଲା—ମୁଁ ପରା ତୋତେ କହିଥିଲି ଯେ ମୁଁ କୃଷିକର୍ମ କରିବ ବୋଲି ?

ଚନ୍ଦ୍ରଶେଖର ହସି ହସି କହିଲା—ଶେଷରେ ଚାଷ କରି ଭାବୁଛୁ ତୁ କୋଟିପତି ହୋଇଯିବୁ, ନା ? ଏ ବୁଦ୍ଧି ଆଜ କାହାକୁ ଦଶୁ ନ ଥିଲା ପରା !

ରାମକୃଷ୍ଣ କହିଲା—ଶୁଣ୍, ଖାଲି କୋଟିପତି ହୋଇଯିବା କ'ଣ ଏ ଜୀବନର ଉଦ୍ଦେଶ୍ୟ ? ଧନ-ସମ୍ପଦ କ'ଣ ମନୁଷ୍ୟକୁ ସୁଖୀ କରିବାର ଏକମାତ୍ର ପନ୍ଥା ? ଧନ ଜୀବନକୁ ସ୍ୱାଚ୍ଛନ୍ଦ୍ୟ ଦେବାର ଗୋଟିଏ ଉପାୟ ମାତ୍ର । ତା' ଛଡ଼ା ଅନ୍ୟ କିଛି ହେବାକୁ ହେଲେ ଧନ ମନୁଷ୍ୟର ଶତ୍ରୁକୁ ରୁଗ୍ଣ ଓ ବିକଳାଙ୍ଗ କରିପକାଏ । ତୁମକୁ ଯଦି ଖାଦ୍ୟପେୟ, ବନ୍ଧୁବାନ୍ଧବ ପ୍ରଭୃତିରୁ ବଞ୍ଚିତ କରି ଗୋଟିଏ ଘରେ ବାସକରିବାକୁ ଦିଆଯିବ, ଯେଉଁଠି ସୁନା, ରୁପା, ମଣି ମାଣିକ୍ୟ ଖାଲି ଏଣେ ତେଣେ ଗଡ଼ୁଥିବ, ସେଠି ତୁମେ ସୁଖୀ ହୋଇପାରିବ କି ? କେବେହେଁ ହୋଇ ପାରିବ ନାହିଁ । କାରଣ ମନୁଷ୍ୟର ଜୀବନକୁ ସୁଖୀ କରିବାକୁ ଧନର ପ୍ରୟୋଜନ ଅତ୍ୟଳ୍ପ, କିନ୍ତୁ ଲୋକେ ସେକଥା ନ ବୁଝି କେବଳ ଉତ୍ତରୋତ୍ତର ଧନବୃଦ୍ଧିରେ ପ୍ରାଣପାତ କରନ୍ତି, ପରସ୍ପରକୁ ହିଂସା କରନ୍ତି, ପାପକର୍ମ କରନ୍ତି ଏବଂ ଶେଷରେ ଯେତେବେଳେ ଏ ଜଗତରୁ ବିଦାୟ ନିଅନ୍ତି, ଗୋଟିଏ କଉଡ଼ି ସୁଦ୍ଧା ସେମାନେ ସାଥିରେ ନେଇ ପାରନ୍ତି ନାହିଁ । ଲୋକଙ୍କର ଏପ୍ରକାର କର୍ମ ପ୍ରେରଣା, ଗୋଟିଏ ମାନସିକ ରୋଗ ବୋଲି ଧରିବାକୁ ହେବ । ଈଶ୍ୱର ମନୁଷ୍ୟକୁ ହସ୍ତ ପଦ ପ୍ରଭୃତି ଅବୟବ ଓ ବୁଦ୍ଧି ଦେଇଅଛନ୍ତି । ସେ ଏହି ସବୁର ବ୍ୟବହାର କରିପାରିଲେ ଅତ୍ୟନ୍ତ ସୁଖରେ ନିଜର ଜୀବିକା ଅର୍ଜନ କରି ସୁସ୍ଥ, ସବଳ ଜୀବନ ଯାପନ କରିପାରିବ । ସେ

ନଗ୍ନ ହୋଇ ଜନ୍ମ ହୁଏ, ନଗ୍ନ ହୋଇ ଏ ଜଗତରୁ ବିଦାୟ ନିଏ । ଯେଉଁ କେତୋଟି ଧନ ଏ ଜଗତରେ ସେ ବାସ କରେ, ତା'ର ଉପଯୁକ୍ତ ବ୍ୟବହାର କରିବା ଉଚିତ । ଟଙ୍କା ପଇସା ପାଇଁ ପ୍ରାଣପାତ କରିବା ଉପଯୁକ୍ତ ବ୍ୟବହାର ନୁହେ । ଟଙ୍କା ପଇସା କି ବସ୍ତୁ ? ସେ ସବୁ ଧାତୁରୁ ଉତ୍ପନ୍ନ । ଧାତୁ ମୃତ୍ତିକାରୁ ଜାତ । ଯାହା ଘରେ ଗଦାଏ ଟଙ୍କା ଅଛି, ମନେକର ଯେ ତା ଘରେ ସେ ଗଦାଏ ରୂପାନ୍ତରିତ ମାଟି ରଖିଛି ମାତ୍ର; ଅନ୍ୟ କିଛି ନୁହେଁ । ସେ ଯଦି ଅନ୍ୟ କିଛି ଭାବୁଥାଏ, ତେବେ ସେ ଭ୍ରାନ୍ତ ।

ଚନ୍ଦ୍ରଶେଖର ଏସବୁ ଶୁଣି କ୍ରମେ ସ୍ତବ୍ଧ ହେବାକୁ ବସିଲା । ସେ ଶେଷରେ ପଚାରିଲା, ତେବେ ତୁମର କୃଷି କରିବାର ଉଦ୍ଦେଶ୍ୟଟା କଅଣ ?

ରାମକୃଷ୍ଣ ଉତ୍ତର ଦେଲା—ପ୍ରତ୍ୟେକ ମନୁଷ୍ୟକୁ ଜୀବନ ଧାରଣ କରିବାକୁ ହେବ । ଜୀବନଧାରଣ ଉପାୟ ପ୍ରକୃତି-ଦେହରେ ନିହିତ ଅଛି । ମନୁଷ୍ୟକୁ ସେସବୁ ବାହାର କରିବାକୁ ହେବ । କୃଷି ଏ ସବୁ ଉପାୟ ଭିତରେ ପ୍ରଧାନ । ଆମ ଦେଶ କୃଷି ପ୍ରଧାନ ଦେଶ । କୃଷି ଆମ ଲୋକଙ୍କର ଏକମାତ୍ର ଭରସା; କିନ୍ତୁ ଦୁଃଖର ବିଷୟ ଆମ ଦେଶର କୃଷକ କୃଷିକର୍ମରେ ଆଦୌ ବୁଦ୍ଧିଚାଳନା କରେ ନାହିଁ । ଆଦିମ ଯୁଗରୁ ଯେଉଁ ପନ୍ଥା ଚାଲିଆସୁଛି, ସେହି ପନ୍ଥାରେ ସେ ଚାଲିଛି । ଅନ୍ୟ ଦେଶ-ମାନଙ୍କରେ କିନ୍ତୁ କୃଷିର ଓ ଶସ୍ୟୋତ୍ପାଦନର ଭିନ୍ନ ଭିନ୍ନ ଉତ୍କୃଷ୍ଟ ପନ୍ଥାସବୁ ଆବିଷ୍କୃତ ହୋଇଥିବାରୁ ସେ ଦେଶର କୃଷୀମାନଙ୍କର ଅବସ୍ଥା ଅତି ସ୍ୱଚ୍ଛଳ ହୋଇ ଉଠୁଛି । ମୁଁ ଉଚିତ ଧାରଣରେ କୃଷିକର୍ମ କରି ମୋ ଗ୍ରାମର ଲୋକଙ୍କୁ ସେ ଜମିରେ ବହୁ ଗୁଣ

ଶସ୍ୟ କପର ଅଦାୟ ହେବ, ତା' ଦେଖାଇଦେବ । ତାହା-ଛଡ଼ା ଏ ଦେଶରେ ଗୋରୁକୁ ମାତା ବୋଲି ପୂଜା କଲେ ମଧ୍ୟ ଲୋକେ ଗୋସେବା ଜାଣନ୍ତି ନାହିଁ । ବର୍ତ୍ତମାନ ଗୋଲକ୍ଷ୍ମୀ କଙ୍କାଳବଶିଷ୍ଟା ଓ ଘୃତ ଦୁଗ୍ଧର ଏକାନ୍ତ ଅଭାବ ହେବାରୁ ଜାତିର ଘୋର ଦୈହିକ ଅବନତି ଘଟୁଅଛି । ପାଶ୍ଚାତ୍ୟ ଦେଶରେ ଶହେ-ବର୍ଷ ତଳେ ଠିକ୍ ଏହି ଅବସ୍ଥା ଥିଲା । ବର୍ତ୍ତମାନ କିନ୍ତୁ ସେ ଅବସ୍ଥା ନାହିଁ—ଏବେ ସେଠାରେ ଉତ୍କୃଷ୍ଟତମ ଗାଭୀ ଦେଖିବାକୁ ମିଳନ୍ତି । ମୁଁ ଏଠି ଆଦର୍ଶ ଗୋପାଳନ ମଧ୍ୟ ଦେଖାଇବି । ଏହାଛଡ଼ା ଫଳ ଗୋଟିଏ ଉତ୍କୃଷ୍ଟ ଖାଦ୍ୟ । ସାହେବମାନଙ୍କର ଦୈନିକ ଖାଦ୍ୟରେ ଫଳର ପ୍ରାଚୁର୍ଯ୍ୟ ଦେଖାଯାଏ । ଏହା ଫଳରେ ସେମାନଙ୍କର ଶିଶୁ ଓ ସ୍ତ୍ରୀମାନଙ୍କର ସୁନ୍ଦର ସ୍ୱାସ୍ଥ୍ୟ ଆମ୍ଭେମାନେ ଦେଖିବାକୁ ପାଉଁ । ଉଦ୍ଦେଶ୍ୟ ରଖି ଫଳର ଚାଷ କରିବା ଏ ଦେଶରେ ସାଧାରଣତଃ ଦେଖାଯାଏ ନାହିଁ । ଲୋକେ ଖାଲି ଧାନ ଉପରେ ଭରସା କରନ୍ତି; ତା ମଧ୍ୟ ପ୍ରଚୁର ପରିମାଣରେ କପରି ପାଇବାକୁ ହେବ, ଜାଣନ୍ତି ନାହିଁ । ଭିନ୍ନ ଭିନ୍ନ ଫଳର ଚାଷ କଲେ ସେମାନେ ଅକ୍ଳେଶରେ ଦୁଇ ପଇସା ରୋଜଗାର କରିପାରନ୍ତେ । ପଇସା ପାଆନ୍ତୁ ବା ନ ପାଆନ୍ତୁ, ଖାଦ୍ୟରୂପେ ଖାଇ ସୁସ୍ଥ ସବଳ ତ ହୁଅନ୍ତେ ? ଅଧିକାଂଶ ଉଦାସୀନ ଦେଖାଯାଆନ୍ତି । ପୁଣି ଦେଖ, ଆମଦେଶରେ ଲୋକେ ମାଛ ଖାଆନ୍ତି; କିନ୍ତୁ ମାଛ ପୋଷିବା ଦିଗରେ ସେମାନଙ୍କର ଦୃଷ୍ଟି ନାହିଁ । ତା' କରିପାରିଲେ କୃଷକର ସ୍ୱାସ୍ଥ୍ୟ ସଙ୍ଗେ ସଙ୍ଗେ ଧନାଗମ ହୁଅନ୍ତା । କିନ୍ତୁ ତାକୁ ସେ ବୁଝି ପାରେ ନାହିଁ । ମୁଁ ଏହି ସବୁ ଦିଗରେ କାମ କରି ଏହି ଗ୍ରାମରେ ସ୍ୱଚ୍ଛନ୍ଦ ଓ ଶାନ୍ତିମୟ ଜୀବନ-ଯାପନ କରିବାକୁ ଚାହେଁ । ଯଦି ମୋ

ଦେଖାଦେଖି ଏଠାକାର ଆଖପାଖର ଲୋକେ କିଛି ଶିଖନ୍ତି, ତେବେ ଯଥେଷ୍ଟ ହେଲା । କ'ଣ କହୁଛ ଏବେ ?

ଚନ୍ଦ୍ରଶେଖର ଭାବିଲା—ରାମକୃଷ୍ଣ ତ ମନ୍ଦ କଥା କହୁ ନାହିଁ; କିନ୍ତୁ ସେ କେବଳ କହିଲା, "ଅଚ୍ଛା ଦେଖିବା, ତୁ ଆଗ କାମ ଆରମ୍ଭ କର ।"

## ପ୍ରଶ୍ନ

୧ । ସହଯୋଗ ସମିତିଦ୍ୱାରା ଲୋକଙ୍କର କି କି ଉପକାର ହୁଏ ?

୨ । କଳଦ୍ୱାରା ଆମ୍ଭେମାନେ ଉପକୃତ ନା ଅପକୃତ ହେଉଅଛୁଁ ?

୩ । ନିମ୍ନଲିଖିତ ଶବ୍ଦମାନଙ୍କର ସନ୍ଧିବିଚ୍ଛେଦ କରି ସେମାନଙ୍କୁ ଗୋଟିଏ ଗୋଟିଏ ବାକ୍ୟରେ ପ୍ରକାଶ କର :—ଦୁଷ୍ଟଭାବ, ପାରସ୍ପରିକ, ନିଷ୍ପୀଡ଼ନ ।

---

## ଫ୍ଲୋରେନ୍ସ ନାଇଟିଙ୍ଗେଲ୍

ଖ୍ରୀଷ୍ଟୀୟ ୧୮୫୭ ଅବ୍ଦରେ ରୁଷିଆର କ୍ରିମିୟା ଉପଦ୍ୱୀପରେ ଏକ ଭୟାବହ ଯୁଦ୍ଧ ସଂଘଟିତ ହୋଇଥିଲା । ଏହି ଯୁଦ୍ଧରେ ଏକ ପକ୍ଷରେ ରୁଷିଆ ଓ ଅନ୍ୟ ପକ୍ଷରେ ତୁର୍କୀ, ଇଂରେଜ ଓ ଫ୍ରାନ୍ସ ସମ୍ମିଳିତ ବାହିନୀ ଯେପରି ସମରପ୍ରାଙ୍ଗଣରେ ଅବତୀର୍ଣ୍ଣ ହୋଇଥିଲେ । ହତ ଓ ଆହତମାନଙ୍କର ସଂଖ୍ୟା ଏତେ ଅଧିକ ଏବଂ ସେନାନିବାସ ଓ ଶୁଶ୍ରୂଷାଗୃହମାନଙ୍କର ଅବସ୍ଥା ଏପରି ହୃଦୟବିଦାରକ ଓ କରୁଣ ହୋଇଥିଲା ଯେ ଏହି ସ୍ଥାନରେ ହିଁ

କ୍ରିମାସ୍ ଫ୍ଲରେନ୍ସ ନାଇଟିଙ୍ଗେଲଙ୍କର କରୁଣାମୟ ନାରୀପ୍ରାଣ ସେବାଧାରାରେ ପ୍ରଥମେ ନିଃସ୍ୟନ୍ଦିତ ହୋଇ ପରେ ସମସ୍ତ ମାନବ-ଜାତିର ପ୍ରାଣରେ ଆଶାର ସଞ୍ଚାର କରି ଆସିଅଛି । ଏହି ସ୍ଥାନରେ ମଧ୍ୟ ରୁଷୀୟବାହିନୀରେ ଆଉ ଏକ ତରୁଣ ପ୍ରତିଭା ସହସା ଲୋକଲୋଚନର ଗୋଚରୀଭୂତ ହେଲା ଯାହାଙ୍କ ବରିଷ୍ଠ ମାନବିକତା ଓ ଧର୍ମପ୍ରାଣତା ଯୋଗୁଁ ଅସଂଖ୍ୟ ମାନବପ୍ରାଣରେ ଶାନ୍ତି ଓ ଅସଂଖ୍ୟ ମାନବାତ୍ମାଙ୍କୁ ସନ୍ମାର୍ଗକୁ ଆନୟନ କରିଅଛି । ସେହି ପ୍ରତିଭାର ନାମ ଲର୍ଡ ଟଲ୍‌ଷ୍ଟୟ ।

ଲର୍ଡ ଟଲ୍‌ଷ୍ଟୟ ରୁଷିଆ ଦେଶର ଏକ ସମ୍ଭ୍ରାନ୍ତ ସାମନ୍ତ ପରିବାରରେ ଜନ୍ମପରିଗ୍ରହ କରିଥିଲେ । ତାଙ୍କ ପିତାଙ୍କର ପ୍ରଭୂତ ସମ୍ପତ୍ତି ଥିଲା ଏବଂ ତାଙ୍କର ବାଲ୍ୟ ଓ ତରୁଣ ଜୀବନ ତାଙ୍କର ସମସାମୟିକ ଧନାଢ୍ୟ ରୁଷୀୟ ଯୁବକମାନଙ୍କ ପରି ବିଳାସ ଓ ବ୍ୟସନରେ ହିଁ ଅତିବାହିତ ହୋଇଥିଲା । ସେକାଳରେ ସମ୍ଭ୍ରାନ୍ତ ରୁଷୀୟ ଯୁବକମାନଙ୍କର ସୈନ୍ୟବିଭାଗରେ ପ୍ରବେଶଲାଭ କରି ଧନ, ପଦ ଓ ସମ୍ମାନଲାଭ କରିବାର ଅତ୍ୟନ୍ତ ତୀବ୍ର ଅଭିଳାଷ ଥିଲା । ଟଲ୍‌ଷ୍ଟୟ ମଧ୍ୟ ଏହି ଅଭିଳାଷର ବଶବର୍ତ୍ତୀ ହୋଇ ବିଶ୍ୱବିଦ୍ୟାଳୟର ସୁକୁମାର ଜୀବନ ପରିତ୍ୟାଗ କରି କ୍ରିମିୟା ସମରରେ ସୈନିକ ସୁଲଭ ଯଶ ଲାଭ କରିବା ପାଇଁ ସେଥିରେ ଯୋଗ ଦେଇଥିଲେ । ଏହି ସ୍ଥାନରେ ସିବାଷ୍ଟୋପଲ୍ ଦୁର୍ଗରେ ସୁପ୍ରସିଦ୍ଧ ଅବରୋଧ ଦ୍ୱନ୍ଦରେ ଟଲ୍‌ଷ୍ଟୟ ଯୋଗ ଦେଇଥିଲେ । ଯୁଦ୍ଧଭୂମିରୁ ଅବସର ପାଇଲା ପରେ ସେ ସୈନିକ, ହତାହତ ଓ ରଣଭୂମିର ପ୍ରାଣସ୍ପର୍ଶୀ ବର୍ଣ୍ଣନା ଭିନ୍ନ ଭିନ୍ନ ସମ୍ବାଦିକାମାନଙ୍କୁ ପଠାଉଥିଲେ । ରୁଷୀୟ-

ସାହିତ୍ୟରେ ଏ ପ୍ରକାର ଉତ୍କୃଷ୍ଟ ସାମରିକ ରଚନା ଆଉ ନ ଥିଲା । ତେଣୁ ଯୁଦ୍ଧାବସାନରେ ତାଙ୍କର କୌଣସି ପଦୋନ୍ନତି ହେବାର ଦେଖା ନ ଗଲେ ମଧ୍ୟ ସେ ଜଣେ ଉଚ୍ଚ ଧରଣର ଲେଖକ ବୋଲି ରୁଷିଆର ଚାରିଆଡ଼େ ପରିଚିତ ହୋଇ-ପଡ଼ିଲେ । ଯୁଦ୍ଧରୁ ସେହି ଟଲ୍‌ଷ୍ଟୟ ଯେତେବେଳେ ମସ୍କୋ ବା ପିଟର୍ସବର୍ଗକୁ ଯାଆନ୍ତି, ସେତେବେଳେ ରୁଷିଆର ପ୍ରବୀଣ ଓ ଶ୍ରେଷ୍ଠ ଲେଖକଗଣ ଏହି ତରୁଣ ସୈନିକଙ୍କୁ ସେମାନଙ୍କର ସମକକ୍ଷ ମନେକରି ଅଭିବାଦନ କଲେ । ଟଲ୍‌ଷ୍ଟୟ ଏଥିରେ ନିରତିଶୟ ପ୍ରୀତ ହୋଇ ତାଙ୍କର ଭବିଷ୍ୟତକୁ ସାମରିକ କର୍ମରେ ବ୍ୟୟ ନ କରି ସାରସ୍ୱତ-ସେବାରେ ନିୟୋଜିତ କରିବା ଲାଗି ସଙ୍କଳ୍ପ କଲେ ।

କ୍ରିମିୟାର ରଣଭୂମିରେ ଟଲ୍‌ଷ୍ଟୟଙ୍କ ଜୀବନର ଆଉ ଏକ ବିଶିଷ୍ଟ ଅନୁଭବ ମଧ୍ୟ ପ୍ରଥମେ ଦେଖା ଦେଇଥିଲା । ସାମନ୍ତ ଓ ଧନିକ ପରିବାରରେ ଜନ୍ମଗ୍ରହଣ କରି ତରୁଣଜୀବନ ଓ ନିଜ ଶ୍ରେଣୀର ଲୋକମାନଙ୍କସହ ବିଳାସ-ବ୍ୟସନରେ କଟାଇ ସେ ତଦବଧି ଦୀନ-ଦରିଦ୍ର ଜନସାଧାରଣଙ୍କଠାରୁ ଦୂରରେ ରହିଥିଲେ । ରୁଷିଆରେ ସେକାଳରେ ଜନସାଧାରଣ କ୍ରୀତଦାସଠାରୁ ମଧ୍ୟ ହୀନତର ଭାବରେ କାଳ କାଟୁଥିଲେ । ସେମାନେ ସମସ୍ତେ ଦରିଦ୍ର କୃଷକ କିନ୍ତୁ ଭୂମି ଉପରେ ସେମାନଙ୍କର କୌଣସି ଅଧିକାର ନ ଥିଲା । ସେମାନେ ବିଳାସୀ ଓ ଅତ୍ୟାଚାରୀ ଭୂସ୍ୱାମୀମାନଙ୍କର ଭୃତ୍ୟରୂପେ କୃଷିକର୍ମ କରି ଜୀବିକା ଅର୍ଜ୍ଜନ କରୁଥିଲେ ମାତ୍ର, ସେମାନଙ୍କର ସୁଖ ଦୁଃଖ ଭୂସ୍ୱାମୀର ଦୟା ଉପରେହିଁ ବିଶେଷ ଭାବରେ ନିର୍ଭର କରୁଥିଲା । ସମଗ୍ର ରୁଷିୟ-ସାମ୍ରାଜ୍ୟର ବିରାଟ ବିଭବ

ଏହି ଦରିଦ୍ରମାନଙ୍କର ସ୍ୱେଦାକ୍ତ ଶ୍ରମ ଉପରେ ପ୍ରତିଷ୍ଠିତ ହୋଇ-
ଥିଲେ ହେଁ ସେମାନେ ଲାଞ୍ଛିତ, ପଦଦଳିତ ଓ ଅବହେଳିତ
ଥିଲେ । ରାଜ୍ୟ ଶାସନରେ ସେମାନଙ୍କର ହାତ ଥିବା ତ ଦୂରର
କଥା, ନିଜ ନିଜ ଭୂଖଣ୍ଡ ଉପରେ ମଧ୍ୟ ସେମାନଙ୍କର ଅଧିକାର
ନ ଥିଲା ଏବଂ ଯେଉଁ ସାମନ୍ତମାନେ ସେମାନଙ୍କ ପରିଶ୍ରମଲବ୍ଧ
ସମ୍ପଦରେ ବିଳାସପୂର୍ଣ୍ଣ ଜୀବନ କାଟୁଥିଲେ, ସେମାନେ ହିଁ ସେହି
ହୀନଦରିଦ୍ର ଜନତା ପ୍ରତି ଅତ୍ୟନ୍ତ ଘୃଣାସହକାରେ ବ୍ୟବହାର
କରୁଥିଲେ । ଟଲ୍‌ଷ୍ଟୟଙ୍କ ପିତୃଭୂମିରେ ଯେଉଁ ଦରିଦ୍ର କୃଷକସବୁ
ଭୃତ୍ୟସ୍ୱରୂପ କାର୍ଯ୍ୟ କରୁଥିଲେ, ବାଲ୍ୟ ଓ ତରୁଣ ବୟସରେ
ସେ ସେମାନଙ୍କୁ ସେହି ଭୃତ୍ୟ ରୂପରେ ଦେଖିଥିଲେ । ତାଙ୍କର
ନିଜ ଶ୍ରେଣୀର ଲୋକେ କୃଷକମାନଙ୍କ ପ୍ରତି ଯେପରି ଘୃଣା
ଦେଖାଇ ସେମାନଙ୍କୁ ଦୂରରେ ରଖିଥାନ୍ତି, ଟଲ୍‌ଷ୍ଟୟ ମଧ୍ୟ
ସେହିପରି କରିଥିଲେ । କିନ୍ତୁ କ୍ରିମିୟା ଯୁଦ୍ଧରେ ତାହାଙ୍କର
ଭାବାନ୍ତର ଆସିଲା । ସେ ଦେଖିଲେ ଯେ, ଏହି କୃଷକଶ୍ରେଣୀରୁ
ସଂଗୃହୀତ ସାଧାରଣ ସୈନିକଗଣ ଯେପରି ନିଃସ୍ୱାର୍ଥଭାବରେ
ପୁରସ୍କାର ପ୍ରତି ଆକାଂକ୍ଷା ନ ରଖି ଓ ନିଜ ସାମ୍ରାଜ୍ୟ ଏବଂ ସମ୍ରାଟଙ୍କ
ପାଇଁ ପ୍ରାଣ ଉତ୍ସର୍ଗ କରି ଯୁଦ୍ଧରେ ପ୍ରାଣପାତ କରୁଛନ୍ତି, ଉଚ୍ଚ
ଶ୍ରେଣୀର ବିଳାସୀ ସାମନ୍ତମାନଙ୍କଠାରେ ତାହା ଦେଖାଯାଉ
ନାହିଁ । ଦିନକୁ ଦିନ ସମରଭୂମିରେ ଦରିଦ୍ର ସାଧାରଣ ସୈନିକର
ଏହି ଚରିତ୍ରବତ୍ତା ଦେଖି ସେ ମୁଗ୍ଧ ହୋଇଉଠିଲେ ଏବଂ
ସେମାନଙ୍କ ଜୀବନରେ ଯେ ମହତ୍ତ୍ୱ ଓ ଗୁରୁତ୍ୱ ଅଛି, ତାହା
ଉପଲବ୍ଧି କରି କ୍ରମେ ସେମାନଙ୍କ ସଙ୍ଗେ ମିଶିବାକୁ ଲାଗିଲେ ।
ଏହି କାଳରୁ ଟଲ୍‌ଷ୍ଟୟଙ୍କ ଜୀବନରେ ଜନସାଧାରଣଙ୍କ ପ୍ରତି ଯେଉଁ

ମମତା ବିକଶିତ ହୋଇ ଉଠିଥିଲା, ତାହା ତାଙ୍କ ସମଗ୍ର ଜୀବନକୁ ଓ ସମସ୍ତ ରଚନାକୁ ପ୍ରଭାବିତ କରିଥିଲା ।

କିମିଆରୁ ଫେରି ଟଲ୍‌ଷ୍ଟୟ ଦେଶାଟନରେ ବାହାରି ପଡ଼ିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ, ଭିନ୍ନ ଭିନ୍ନ ଦେଶମାନଙ୍କରେ ଜନସାଧାରଣଙ୍କର ଅବସ୍ଥା ସ୍ୱଚକ୍ଷୁରେ ଦେଖି ରୁଷିଆର ଦରିଦ୍ର କୃଷକମାନଙ୍କ ଲାଗି ଯଦି କିଛି କରିପାରନ୍ତି । ଇତିମଧ୍ୟରେ ସେ ଜର୍ମାନ୍ ଲେଖକମାନଙ୍କ ଅନୁକରଣରେ 'ପଲିକୋଷ୍କା' ନାମକ ଗୋଟିଏ ପୁସ୍ତକରେ ଦରିଦ୍ର କୃଷକର ବର୍ଣ୍ଣନା ଦେଇ ରୁଷିଆରେ ଅଧିକ ପରିଚିତ ହୋଇ ପଡ଼ିଥାନ୍ତି । ବାହାରେ ସ୍ୱୀୟ ଶ୍ରେଣୀର ବିଳାସ ବ୍ୟସନ ମଧ୍ୟରେ ଜୀବନ କଟାଉଥିଲେ ମଧ୍ୟ ତାଙ୍କର ପ୍ରାଣରେ କିଛି ବିଶିଷ୍ଟ କର୍ମ କରିଯିବାର ଅଦମ୍ୟ ଇଚ୍ଛା ଜାଗ୍ରତ ଥାଏ ।

ଭ୍ରମଣ ମଧ୍ୟରେ ଥରେ ସେ ଲୁସର୍ଣ୍ଣ ସହରର ଗୋଟିଏ ହୋଟେଲ୍‌ରେ ଅବସ୍ଥାନ କରୁଥିବା ସମୟରେ ଦେଖିଲେ ଯେ, ହୋଟେଲ୍‌ର ଧନୀକ ବିଳାସୀ ଭ୍ରମଣକାରୀମାନେ ଗୋଟିଏ ଦରିଦ୍ର ଭ୍ରାମ୍ୟମାଣ ଗାୟକକୁ ସେ ହୋଟେଲରେ ଆଶ୍ରୟ ଦେବାକୁ ଏକାନ୍ତ ଅନିଚ୍ଛୁକ । ଟଲ୍‌ଷ୍ଟୟଙ୍କ ଅନ୍ତର ଏଥିରେ ବିବ୍ରତ ହୋଇଉଠିଲା ଏବଂ ସେ ସେହି ଦରିଦ୍ର ଗାୟକକୁ ନେଇ ନିଜର ଟେବୁଲ ନିକଟରେ ଉପବେଶନ କରାଇ ଉପଯୁକ୍ତ ଆତିଥ୍ୟ ପ୍ରଦାନ କଲେ । ପ୍ରତିବେଶୀ ଧନୀକ ସହଯାତ୍ରୀମାନେ ଏଥିରେ ବିରକ୍ତ ହୁଅନ୍ତେ ସେ ଦରିଦ୍ର ପ୍ରତିବେଶୀ ପ୍ରତି ଧନୀକମାନଙ୍କର ନିର୍ଦ୍ଦୟ ହୃଦୟହୀନତା ସମ୍ବନ୍ଧରେ ତୀବ୍ରଭାବରେ ପ୍ରତିବାଦ କରିବାକୁ ଲାଗିଲେ ।

୧୮୬୧ ଖ୍ରୀଷ୍ଟାବ୍ଦରେ ରୁଷିଆ ନୂତନ ସମ୍ରାଟ ଦ୍ୱିତୀୟ ଆଲେକଜାଣ୍ଡର ଏକ ଘୋଷଣାଦ୍ୱାରା ରୁଷିଆର ଦରିଦ୍ର କୃଷକମାନଙ୍କୁ ଭୂସ୍ୱାମୀମାନଙ୍କ ଦାସତ୍ୱରୁ ମୁକ୍ତ କରିଦେଲେ । ଏହା ରୁଷିୟାରେ ଏକ ନବଯୁଗର ସୂତ୍ରପାତ କଲା । ଏହାର ମୂଳରେ ଯେ ଟଲଷ୍ଟୟଙ୍କ ପ୍ରତିଭାଶାଳୀ ଲେଖକମାନଙ୍କର ଆନ୍ଦୋଳନ ହିଁ ବିଦ୍ୟମାନ ଥିଲା, ଏହା ବୁଝାଯାଏ । ଫଳରେ ଭୂସ୍ୱାମୀ ଓ କୃଷକମାନଙ୍କ ମଧ୍ୟରେ ଭୂସମ୍ପତ୍ତି ବଣ୍ଟନ ନିଷ୍ପତ୍ତି କରିବା ଲାଗି ଯେଉଁ ବିଚାରମଣ୍ଡଳୀ ଗଠିତ ହୋଇଥିଲା, ସେଥିରେ ସମ୍ରାଟ ଟଲଷ୍ଟୟଙ୍କୁ ରଖିଥିଲେ ।

ଭୂସମ୍ପତ୍ତିକାରୀମାନଙ୍କର ବିରକ୍ତି ସତ୍ତ୍ୱେ ଟଲଷ୍ଟୟ ସ୍ୱାଧୀନତାପ୍ରାପ୍ତ କୃଷକମାନଙ୍କର ପକ୍ଷ ବରାବର ସମର୍ଥନ କରୁଥିଲେ । ଇତିମଧ୍ୟରେ ନିଜ ଗ୍ରାମ 'ୟାସ୍ନାୟା ପଲିଆନା' ଠାରେ ଦରିଦ୍ର କୃଷକମାନଙ୍କ ପାଇଁ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠା କରି ମଧ୍ୟ ସେ କୃଷକମାନଙ୍କର ମନ ଆକର୍ଷଣ କରି ପାରିଥିଲେ । ଏହି ବିଦ୍ୟାଳୟ ପୁଣି ଏକ ନୂତନ ରୀତିରେ ପରିଚାଳିତ ହେଉଥିଲା । ଛାତ୍ରମାନେ ଯାହାର ଯେତେବେଳେ ସୁବିଧା ସେତେବେଳେ ଆସି ପାରୁଥିଲେ ଏବଂ ସେମାନଙ୍କୁ କୌଣସି ବେତନ ଦେବାକୁ ପଡ଼ୁ ନ ଥିଲା । ଟଲଷ୍ଟୟ ନିଜେ ଶିକ୍ଷାର ଭାର ନେଇଥିଲେ ଏବଂ ଛାତ୍ରମାନେ ଯେପରି ଭାବରେ ଶିକ୍ଷିତ ହେବାକୁ ଇଚ୍ଛା କରୁଥିଲେ, ସେ ସେମାନଙ୍କୁ ସେହିପରି ଭାବରେ ଅଧ୍ୟାପନା କରୁଥିଲେ । ଅଧ୍ୟାପନାରେ ଯଦି କାହାର ଅନୁରାଗ ନ ଥାଏ, ତେବେ ତାକୁ ଚାଲିଯିବାକୁ ଅନୁମତି ଦିଆ ଯାଉଥିଲା । ଏ ପ୍ରକାର

ବିଦ୍ୟାଳୟ ପ୍ରତିଷ୍ଠାରେ ଟଲ୍‌ଷ୍ଟୟ ଏହି ମତପ୍ରକାଶ କରିଥିଲେ ଯେ, ସକଳ ପ୍ରକାର ଶିକ୍ଷା ସ୍ୱାଭାବିକ ହେବା ଉଚିତ। ଶିକ୍ଷା ଯଦ୍ୟପି ଶିକ୍ଷାର୍ଥୀର ବିନାନୁରାଗ ବିନା ଆଗ୍ରହରେ ବାଧ୍ୟତା ସହକାରେ ତାହା ଉପରେ ଲଦି ଦିଆଯାଏ, ତେବେ ସେ ଶିକ୍ଷାକୁ ତା'ର ମନ ଓ ବୁଦ୍ଧି ସହଜରେ ଧାରଣ କରିବ ନାହିଁ ଓ ତାହା ତା'ର ଉପକାର ନ କରି ବରଂ ଅପକାର କରିବ।

କିନ୍ତୁ ଏ ପ୍ରକାର ଅଶ୍ରୁତପୂର୍ବ ଅନୁଷ୍ଠାନଟିକୁ ସମ୍ରାଟଙ୍କ କର୍ମଚାରୀଗଣ ସନ୍ଦେହ ଚକ୍ଷୁରେ ଦେଖିବାକୁ ଲାଗିଲେ। ସେମାନେ ମନେକଲେ ଯେ, ଟଲ୍‌ଷ୍ଟୟ ବୋଧହୁଏ କୃଷକବାଳକ-ମାନଙ୍କୁ ସରକାର ବିରୁଦ୍ଧରେ ବିଦ୍ରୋହ ଶିକ୍ଷା ଦେଉଛନ୍ତି। ଏହାପରେ ବେଳରେ ଟଲ୍‌ଷ୍ଟୟ ସ୍ୱାସ୍ଥ୍ୟ ପରିବର୍ତ୍ତନ ଲାଗି ଷ୍ଟେପିସ୍ ଅଞ୍ଚଳରେ ଥିବାବେଳେ ସମ୍ରାଟଙ୍କ ପୋଲିସ ବିଦ୍ୟାଳୟର ଶିକ୍ଷକମାନଙ୍କୁ କାରାରୁଦ୍ଧ ଏବଂ ବିଦ୍ୟାଳୟ ଓ ଟଲ୍‌ଷ୍ଟୟଙ୍କ ଘର ଖାନତଲାସ କରି ବିଦ୍ରୋହଜନକ କୌଣସି ପ୍ରକାର ଲେଖା ବା ବସ୍ତୁ ନ ପାଇ ଫେରିଯାଇଥିଲେ। ଏହି ସମ୍ବାଦ ଟଲ୍‌ଷ୍ଟୟଙ୍କ କର୍ଣ୍ଣଗୋଚର ହୁଅନ୍ତେ ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ରୁଷିଆ ପରିତ୍ୟାଗ କରି ଅନ୍ୟ ଦେଶରେ ବସତି କରିବାର ସଂକଳ୍ପ କରିଥିଲେ।

୧୮୬୨ ଖ୍ରୀଷ୍ଟାବ୍ଦରେ ଟଲ୍‌ଷ୍ଟୟ ସୋଫିଆ ନାମ୍ନୀ ଏକ ତରୁଣୀଙ୍କର ପାଣିଗ୍ରହଣ କଲେ। ଏହି ମହୀୟସୀ ନାରୀ ବିବାହ-କାଳରୁ ସ୍ୱାମୀଙ୍କ ମୃତ୍ୟୁଯାଏ କଠୋର ପାତିବ୍ରତ୍ୟ ଧର୍ମପାଳନ କରି ସ୍ୱାମୀଙ୍କର ନାନାଭାବରେ ସେବା କରି ପ୍ରକୃତ ସହଧର୍ମିଣୀ

ହୋଇଥିଲେ ଏବଂ ଟଲ୍‌ଷ୍ଟୟଙ୍କ ପ୍ରତିଭାର ବିକାଶରେ ଶ୍ରେଷ୍ଠ ସାହାଯ୍ୟ ଦେଇ ପାରିଥିଲେ ।

କ୍ରମେ ଟଲ୍‌ଷ୍ଟୟଙ୍କ ବାଣୀ-ପ୍ରତିଭା ବିକଶିତ ହେବାକୁ ଲାଗିଲା । ପରେ ପରେ ସେ 'ସମର ଓ ଶାନ୍ତି', 'ଆନାକାରେନିନା' ଓ 'କସାକ୍‌ସ' ପ୍ରଭୃତି ବିଶ୍ୱବିଖ୍ୟାତ ଉପନ୍ୟାସମାନ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରନ୍ତେ ଗୁରଅଡ଼େ ଲୋକେ ଟଲଷ୍ଟୟଙ୍କ କଥା କହିବାକୁ ଲାଗିଲେ । ଟଲ୍‌ଷ୍ଟୟ ଯେ ଜଣେ ଅସାଧାରଣ ପ୍ରତିଭାଶାଳୀ ଔପନ୍ୟାସିକ, ଏହା ଗୁରଅଡ଼େ ପ୍ରଚାରିତ ହେଲା । ପ୍ରତ୍ୟେକ ରଚନାରେ ଟଲ୍‌ଷ୍ଟୟ ନାଗରିକ ଓ ଧନାଢ଼୍ୟ ଜୀବନର କୃତ୍ରିମତା ଓ ପଲ୍ଲୀକୃଷକଜୀବନର ସରଳତା ଦେଖାଇବାକୁ ଚେଷ୍ଟା କରିଅଛନ୍ତି । ସେ କୃତ୍ରିମତାକୁ ଘୃଣା କରୁଥିଲେ । ଜୀବନରେ ପ୍ରତ୍ୟେକ କର୍ମରେ ସ୍ୱାଭାବିକ ଓ ପ୍ରକୃତ ଜୀବନସ୍ପର୍ଶ ସେ ଦେଖିବାକୁ ଇଚ୍ଛା କରୁଥିଲେ । ସେ ଥରେ ଶୁଣିପାରିଲେ ଯେ ତାଙ୍କର ପରମ ବନ୍ଧୁ ଅନ୍ୟତମ ରୁଷୀୟ ଔପନ୍ୟାସିକ ଟୁର୍ଗେନିଭଙ୍କର କନ୍ୟା ଦୁକୂଳପରିହିତା ହୋଇ ଦରିଦ୍ରମାନଙ୍କର ଚୀରସୀବନ କରି ସେମାନଙ୍କୁ ସାହାଯ୍ୟ କରୁଥିବାର ଛଳନା କରୁଛି । ପରମ ବନ୍ଧୁତା ସତ୍ତ୍ୱେ ଟଲ୍‌ଷ୍ଟୟ ଏହା କୃତ୍ରିମ ଆଚରଣର ତୀବ୍ର ପ୍ରତିବାଦ କରିଥିଲେ ଏବଂ ସେ ପ୍ରତିବାଦ ଫଳରେ ଦୁଇ ସାହିତ୍ୟିକଙ୍କ ମଧ୍ୟରେ ବାରମ୍ବାର କଳହ ଲାଗିଥିଲା ।

ଗଭୀର ଦରିଦ୍ରପ୍ରୀତି ଟଲ୍‌ଷ୍ଟୟଙ୍କ ସମସ୍ତ ବିଳାସଦ୍ରବ୍ୟ ପରିତ୍ୟାଗ କରି ଦରିଦ୍ର ପରି ବଞ୍ଚିବାକୁ ଶିଖାଇଥିଲା । ଏତେବେଳକୁ ସେ ପ୍ରାୟ ଦରିଦ୍ର କୃଷକର ବସ୍ତ୍ର ପରିଧାନ ଓ

ଦରିଦ୍ର କୃଷକର ଖାଦ୍ୟ ଗ୍ରହଣ କରୁଥିଲେ । ଏତେ ବଡ଼ ବିଶ୍ୱବିଖ୍ୟାତ ଔପନ୍ୟାସିକଙ୍କର ଏବଂବିଧ ଦରିଦ୍ରପ୍ରୀତି, ଟଲ୍‌ଷ୍ଟୟଙ୍କ ନାମକୁ ଜଗତର ସବୁ ଅଞ୍ଚଳରେ ପରିଚିତ କରାଇ ଦେଇଥିଲା ଏବଂ ଜଗତର ସବୁ ଅଞ୍ଚଳର ଲୋକେ ତାଙ୍କ ସଙ୍ଗେ ପତ୍ରର ଆଦାନପ୍ରଦାନ ବା ଦର୍ଶନ ଇଚ୍ଛା କରି ତାଙ୍କର ଜୀବନକୁ କ୍ରମେ ଜଞ୍ଜାଳମୟ କରି ପକାଇଥିଲେ ।

ତରୁଣ ଜୀବନର ନାସ୍ତିକତା ପରେ ଟଲ୍‌ଷ୍ଟୟଙ୍କ ପ୍ରାଣରେ ଇତିମଧ୍ୟରେ ଗଭୀର ଈଶ୍ୱରବିଶ୍ୱାସ ଆସିଥିଲା । ପ୍ରତି ରବିବାର ଦିନ ଗ୍ରାମ୍ୟ ଗୀର୍ଜାକୁ ଯାଇ ସାଧାରଣ ଲୋକଙ୍କ ସହ ଉପବେଶନ କରି ସମବେତ ପ୍ରାର୍ଥନାରେ ସେ ପ୍ରଥମେ ଯୋଗ ଦେଉଥିଲେ । କିନ୍ତୁ କ୍ରମେ ସେଠାରେ ମଧ୍ୟ କୃତ୍ରିମତା ଲକ୍ଷ୍ୟ କରି ଗୀର୍ଜାକୁ ଆଉ ଗଲେ ନାହିଁ । କ୍ରମେ ପ୍ରଚଳିତ ଖ୍ରୀଷ୍ଟଧର୍ମ ପ୍ରତି ତାଙ୍କର ଅନାସ୍ଥା ଆସିଲା ଏବଂ ସେ ପୁରୋହିତମାନଙ୍କ ଜୀବନକୁ ସମାଲୋଚନା କରି ତାହା ବାଇବେଲ୍ ବର୍ଣ୍ଣିତ ଯୀଶୁଙ୍କ ଜୀବନଠାରୁ କେତେ ପୃଥକ୍, ତାହା ଦେଖାଇ ଦେଇଥିଲେ । ନିଜେ ମଧ୍ୟ ନିଜ ଜୀବନରେ ବାଇବେଲ୍‌ର ନୀତି ପାଳନ କରିବାକୁ ଚେଷ୍ଟା କରି ନିଜର ଜୀବନଯାପନ ପ୍ରଣାଳୀକୁ ଯେତେଦୂର ସରଳ କରିପାରନ୍ତି, ତା'ର ଚେଷ୍ଟା କଲେ । ସେ କ୍ରମେ ଯୋତା ସିଲାଇ କରିବା ଓ କୃଷକମାନଙ୍କ ସହ କୃଷିକ୍ଷେତ୍ରରେ କାୟିକ ପରିଶ୍ରମ କରିବାକୁ ଶିଖିଲେ ଓ ସେଥିରେ ନିପୁଣତା ଲାଭ କରି ଆପଣାକୁ ଶ୍ଳାଘ୍ୟ ମନେ କରିବାକୁ ଲାଗିଲେ । ତାଙ୍କର କ୍ରମେ ଏହି ଧାରଣା ହେଲା ଯେ ଧନ ଓ ହିଂସା ଏହି ଦୁଇଟି ହିଁ ମାନବର ସମସ୍ତ ଅନର୍ଥର ମୂଳ କାରଣ । ଧନଲୋଭ ଯୋଗୁଁ ସମାଜରେ ଧନୀ

ଦରିଦ୍ରର ପ୍ରଭେଦ ଓ ଧନିକ ଏବଂ ସମ୍ଭ୍ରାନ୍ତର ଦରିଦ୍ର ପ୍ରତି ଲାଞ୍ଛନା ସମ୍ଭବ ହେଉଛି । ହିଂସା ଯୋଗୁଁ ଜାତି ଜାତି ଓ ଦେଶ ଦେଶ ମଧ୍ୟରେ ଭୀଷଣ ଯୁଦ୍ଧସବୁ ସମ୍ଭବ ହେଉଛି । ଏହାର ପ୍ରତିକାର ସ୍ୱରୂପ ସେ ଅହିଂସା ପ୍ରତିରୋଧ ମତ ପ୍ରଚାର କରିଥିଲେ ଓ ସମାଜର ଶାନ୍ତି ପାଇଁ କାଞ୍ଚନ ପରିତ୍ୟାଗର ଉପଦେଶ ଦେଇ-ଥିଲେ । ଦୃଷ୍ଟାନ୍ତ ସ୍ୱରୂପ ସେ ନିଜେ ମୁଦ୍ରାକୁ ଘୃଣା କରିବାକୁ ଲାଗିଲେ ଏବଂ ନିଜର ବିରାଟ ଭୂସମ୍ପତ୍ତିକୁ ପରିତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିବାର ସଙ୍କଳ୍ପ କଲେ । କିନ୍ତୁ ତାଙ୍କର କେତେକ ସନ୍ତାନ ଏଥିରେ ପ୍ରତିବାଦ କରିବାରୁ ସେ ବାଧ୍ୟ ହୋଇ ସମସ୍ତ ସମ୍ପତ୍ତି ନିଜ ନାମରୁ କାଢ଼ି ଦେଇ ପତ୍ନୀଙ୍କ ହସ୍ତରେ ପ୍ରଦାନ କରିଦେଲେ ଓ ନିଜ ଘରେ ଜଣେ ସାମାନ୍ୟ ଲୋକ ପରି ବସବାସ କରିବାକୁ ଲାଗିଲେ ।

କକେଶୀୟ ପ୍ରଦେଶରେ ଦୁଖୋବର ନାମକ ଏକ ଜାତି ଟଲ୍‌ଷ୍ଟୟଙ୍କର ଏହି ନୂତନ ମତସବୁ ଆଗ୍ରହ ସହକାରେ ଗ୍ରହଣ କରି ସେହି ଅନୁଯାୟୀ ସେମାନଙ୍କର ସମାଜ ଗଠନ କରିବାକୁ ଲାଗିଲେ । ସେମାନେ ବ୍ୟକ୍ତିଗତ ସମ୍ପଦସବୁକୁ ପରିତ୍ୟାଗ କରି ସମସ୍ତ ସମ୍ପତ୍ତିକୁ ସାଧାରଣର ଭୋଗରେ ନିୟୋଜିତ କରିବାର ଚେଷ୍ଟାକଲେ । ପ୍ରଚଳିତ ଧର୍ମନିୟମ ବିରୁଦ୍ଧରେ ନିଜର ନୈତିକ ବିଧିମାନ ପ୍ରଣୟନ କରି ସେହି ଅନୁସାରେ ଚଳିବାର ଚେଷ୍ଟା କଲେ ଏବଂ ପରିଶେଷରେ ଅହିଂସାଧର୍ମକୁ ଜୀବନର ମତ ବୋଲି ଗ୍ରହଣ କରି ସମ୍ରାଟଙ୍କର ସୈନ୍ୟବିଭାଗରେ ଯୋଗ ଦେବାକୁ ପ୍ରତ୍ୟାଖ୍ୟାନ କଲେ । ଫଳରେ ସାମ୍ରାଜ୍ୟରେ ଗୋଳମାଳ ଉପସ୍ଥିତ ହେଲା ଏବଂ ସମ୍ରାଟଙ୍କ କର୍ମଚାରୀମାନେ ସେମାନଙ୍କ ମଧ୍ୟରୁ

ଅନେକଙ୍କୁ ବହିଷ୍କାର ଓ ଅନେକଙ୍କ ଉପରେ ଅତ୍ୟାଚାର କରିବାକୁ ଲାଗିଲେ । ଟଲ୍‌ଷ୍ଟୟ ଏହି ଅତ୍ୟାଚାରିତ ଜନତାଙ୍କୁ ସାହାଯ୍ୟ କରିବା ଲାଗି 'ପୁନର୍ଜନ୍ମ' ନାମକ ବିଖ୍ୟାତ ଉପନ୍ୟାସ ଲେଖି ତଲ୍ଲବ୍ଧ ସମସ୍ତ ଅର୍ଥ ସେହିମାନଙ୍କ ସେବାରେ ନିୟୋଜିତ କରିଥିଲେ । ଏହି ଉପନ୍ୟାସରେ ରୁଷିଆର କାରାଗାରମାନଙ୍କରେ ଯେଉଁ ଜଘନ୍ୟ ବ୍ୟବସ୍ଥା ପ୍ରଚଳିତ ଥିଲା, ତାହାର ହୃଦୟବିଦାରକ ବର୍ଣ୍ଣନା କରାଯାଇଛି ।

ଜୀବନର ଅବସାନ ସମୟରେ ଟଲ୍‌ଷ୍ଟୟ ନାନା ଆଡ଼ୁ ତାଙ୍କ ପ୍ରଚାରିତ ମତସବୁକୁ ଲୋକେ କାର୍ଯ୍ୟରେ ପରିଣତ କରିବାକୁ ଯାଇ କିପରି ବିଫଳ ଓ ଲାଞ୍ଛିତ ହେଉଛନ୍ତି, ତାହା ଶୁଣି ବଡ଼ ବ୍ୟଥିତ ହୋଇଥିଲେ । ପ୍ରଚଳିତ ଖ୍ରୀଷ୍ଟଧର୍ମ ବିରୁଦ୍ଧରେ ଲେଖିଥିବାରୁ ତାଙ୍କୁ ମଧ୍ୟ ପ୍ରକାଶ୍ୟ ଭାବରେ ଧର୍ମମଣ୍ଡଳୀରୁ ବାହାର କରିବାର ପ୍ରଚାର କରାଯାଇଥିଲା । ଏଣେ ନିଜ ଗୃହରେ ଓ ବାହାରେ ତାଙ୍କ ମତର ଅନେକ ପ୍ରତିରୋଧୀ ବାହାରିବାରୁ ତାଙ୍କର ମାନସିକ ଶାନ୍ତିଭଙ୍ଗ ହେଉଥିଲା । ସମସ୍ତ ଯୌବନ ବିଳାସରେ କଟାଇ ବୃଦ୍ଧ ବୟସରେ ଅନୁତପ୍ତ ଟଲ୍‌ଷ୍ଟୟ ଯେଉଁ ବୈରାଗ୍ୟ ପ୍ରଚାର କରୁଥିଲେ, ତାହା ଅନେକେ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ ।

ଶେଷରେ ଟଲ୍‌ଷ୍ଟୟ ଏ ସମସ୍ତ ଜଞ୍ଜାଳରୁ ପଳାୟନ କରି କୌଣସି ନିକାଞ୍ଚନ ସ୍ଥାନରେ ଧର୍ମଜୀବନ ଯାପନ କରିବାର ମନସ୍ଥ କରି ଦିନେ ସମସ୍ତଙ୍କ ଅଜ୍ଞାତରେ ଘରୁ ନିଷ୍କ୍ରାନ୍ତ ହୋଇପଡ଼ିଲେ । ସେ କକେଶୀୟ ପର୍ବତମାଳାର କୌଣସି ନିର୍ଜ୍ଜନ ସ୍ଥାନରେ ଆଦର୍ଶ ଓ ପବିତ୍ର ଜୀବନ କଟାଇବାକୁ ସଂକଳ୍ପ

କରୁଥିଲେ । ସେତେବେଳକୁ ସେ ଅତ୍ୟନ୍ତ ଜରାଜୀର୍ଣ୍ଣ ହୋଇ ପଡ଼ିଥିଲେ । ଶୀତକାଳର ପାଗ ମଧ୍ୟ ଅତ୍ୟନ୍ତ ଖରାପ ଥିଲା । କିନ୍ତୁ ପଥ ଅତିକ୍ରମ କଲା ପରେ ବୃଦ୍ଧ ତପସ୍ୱୀଙ୍କର ଦେହ ଅବଶ ହୋଇପଡ଼ିଲା ଓ ସେ ଗୋଟିଏ ଅଜ୍ଞାତ ରେଳଷ୍ଟେସନରେ ଓହ୍ଲାଇ ସେଇଠାରେ ଆଶ୍ରୟ ନେଇ ନେଇ ପ୍ରାଣତ୍ୟାଗ କଲେ । ତାଙ୍କର ମୃତ୍ୟୁସମ୍ବାଦ ସମଗ୍ର ବିଶ୍ୱରେ ପ୍ରଚାରିତ ହୁଅନ୍ତେ, ସମଗ୍ର ମାନବ ଜାତି ଏହି ପ୍ରତିଭାଶାଳୀ ସାହିତ୍ୟିକ, ଦରିଦ୍ର-ବନ୍ଧୁ, ଅହିଂସାର ଋଷି; ଶାନ୍ତିର ପୁରୋହିତ ଓ ବର୍ତ୍ତମାନ ଜଗତରେ ଶ୍ରେଷ୍ଠ ସଂସ୍କାରକଙ୍କ ଲାଗି ଗଭୀର ଦୁଃଖପ୍ରକାଶ କରିବାକୁ ଲାଗିଲେ ।

## ପ୍ରଶ୍ନ

୧ । ଟଲ୍‌ଷ୍ଟୟଙ୍କର ଦୀନ ଦରିଦ୍ରଙ୍କ ପ୍ରତି ମମତା କିପରି ଜନ୍ମିଲା ?

୨ । ସୈନିକ ଟଲ୍‌ଷ୍ଟୟ କିପରି ବିଖ୍ୟାତ ଔପନ୍ୟାସିକ ହେଲେ ?

୩ । ତାଙ୍କୁ ଧର୍ମମଣ୍ଡଳୀରୁ ବାହାର ଯିବାପାଇଁ କାହିଁକି ପ୍ରକାଶ୍ୟ ପ୍ରଚାର କରାଯାଇଥିଲା ?

୪ । ନିଷ୍କ୍ରାନ୍ତ, ତଲ୍ଲବ୍ଧ, ପୁନର୍ଜନ୍ମ, ସନ୍ମାର୍ଗ—ଏସବୁର ସନ୍ଧି ବିଚ୍ଛେଦ କରି ମୂଳ ଲେଖ ଓ ପ୍ରତ୍ୟେକ ଶବ୍ଦକୁ ସ୍ୱତନ୍ତ୍ର ଭାବରେ ବାକ୍ୟରେ ପ୍ରକାଶ କର ?



# ପ୍ରାର୍ଥନା

( ୧ )

ଅହେ ଜଗତପତି, ଅଗତି-ଜନ-ଗତି,
ମିନତି, କୃପା କର ବାରେ,
ସମ୍ପଦ-ବିପଦରେ ଦୁର୍ଗମେ ବା କାନ୍ତାରେ
ମୋ ଭକ୍ତି ରହୁ ତୁମ୍ଭଠାରେ ହେ, ମହାପ୍ରଭୁ !

ନ ଲୋଡ଼େ ଏମନ୍ତ ସମ୍ପଦ
ଯହିଁ ନ ପାଇବି ଶ୍ରୀପଦ,
ତୁମ୍ଭେ ସର୍ବସ୍ୱ ଧନ, ଅଧମ, ଅକିଞ୍ଚନ
ଏହା ଯେମନ୍ତ ଜାଣିପାରେ ହେ, ମହାପ୍ରଭୁ !

( ୨ )

ସକଳମୂଳାଧାର, ଇଙ୍ଗିତରେ ସଂସାର
ଚଳୁଛି ଆଜ୍ଞା ପରମାଣେ,
ମୋର ଶରୀର, ପ୍ରାଣ କରିଅଛ ନିର୍ମାଣ
କେମନ୍ତେ ଏହା ତ ନ ଜାଣେ ହେ, ମହାପ୍ରଭୁ !

ତୁମ୍ଭେ ପବିତ୍ର ଚିରକାଳ
ମୁହିଁ ତ ଜଗତ-ଜଞ୍ଜାଳ,
ହେଲେ ପୁତ୍ର ଦୁରନ୍ତ ଦୟାଳୁ କ୍ଷମାବନ୍ତ
ପିତା କି ହୁଅନ୍ତି କରାଳ ହେ, ମହାପ୍ରଭୁ !

( ୩ )

ଅନନ୍ତ ଆକାଶରେ ଅନନ୍ତ ଅନ୍ଧକାରେ
କିଛୁ ତ ଦେଖିବାର ନାହିଁ,
କେଉଁ ଶକ୍ତି ନ ଜାଣେ କହାଁ ପସ୍ତାଣେ ଝାଣେ
କାହାକୁ ଭେଟିବାର ପାଇଁ ହେ, ମହାପ୍ରଭୁ !

ତା' ସଙ୍ଗେ କି ସମ୍ବନ୍ଧ ଅଛି,
ସତତ ତାହାଙ୍କୁ ଲୋଡ଼ୁଛି,
ଯେସନେ ଜଳବିନ୍ଦୁ ସତତ ଲୋଡ଼େ ସିନ୍ଧୁ,
ଉତ୍ପତ୍ତି-ସ୍ଥାନ ଲଭ ପାଇଁ ହେ, ମହାପ୍ରଭୁ !

( ୪ )

ପୂର୍ବେ ମୁଁ ଥିଲି କାହିଁ ଆସିଅଛି କପାଇଁ
ପୁଣି ମୁଁ ଯିବ କେଉଁଠାକୁ ?
କୃତକର୍ମ ସକଳ ଭୁଞ୍ଜିବ କେଉଁ ଫଳ
କହାଁ ନ ଦେଲ୍ ଜାଣିବାକୁ ହେ, ମହାପ୍ରଭୁ !

ଇଚ୍ଛା ନୟ ନ କହିବ ମୋତେ,
ଏହା ତ ନ ଆସେ ଘରତେ,
ମୁଁ ତ ନିଜ ଇଚ୍ଛାରେ ଆସିନାହିଁ ସଂସାରେ
ଆପଣା କର୍ମ ସାଧିବାକୁ ହେ, ମହାପ୍ରଭୁ !

( ୫ )

ଙ୍କର କରୁଣା ଦାନେ                    କର୍ତ୍ତବ୍ୟ-କର୍ମସ୍ଥାନେ
କରୁଛି ଏତିକି ମିନତି,
ଅନିତ୍ୟ ସୁଖେ ବୁଡ଼ି                    ତୁମ୍ଭ ମହିମା ଭୁଲି
ନ ଲଭେଁ ଯେମନ୍ତ ଦୁର୍ଗତି ହେ, ମହାପ୍ରଭୁ !
ଆପଣେ ହୋଇ ବିରାଜିତ
ହୃଦୟ କର ଆଲୋକିତ,
ସମ୍ପତ୍ତି, ଧନମାନ,                    ହେଉ ମୋ ତୁଚ୍ଛ ଜ୍ଞାନ
ତୁଅ ମୋ ସର୍ବସ୍ୱ ସମ୍ପତ୍ତି ହେ, ମହାପ୍ରଭୁ !

( ୬ )

ପୋଷିବାକୁ ଉଦର                    କଥାଇଁ ଡର ମୋର
ଜୀବନ ରକ୍ଷା ପାଇଁ ସିନା
ଯେତେ କଲେ ଯତନ                    ରହିବ କି ଜୀବନ
ତୁମ୍ଭ କରୁଣା ଆଜ୍ଞା ବିନା ହେ, ମହାପ୍ରଭୁ !
ରହୁ ବା ନ ରହୁ ଶରୀର,
ଏହା ତ ନୁହେଁ କିଛି ଛାର
ସ୍ଥିର ହେଉ ମୋ ଜ୍ଞାନ,                    ତୁମ୍ଭଙ୍କୁ କରେ ଧ୍ୟାନ,
ଏତିକି ମୋହର ପ୍ରାର୍ଥନା ହେ, ମହାପ୍ରଭୁ !
—ସ୍ୱର୍ଗୀୟ ଫକୀରମୋହନ ସେନାପତି

ପ୍ରଶ୍ନ

୧ । ଅନନ୍ତ ଆକାଶରେ···ଭେଟିବାର ପାଇଁ—ପଦ୍ୟାଂଶଟିର ଭାବ ସରଳ ଭାଷାରେ ବୁଝାଇଦିଅ ।

୨ । ବିଭୁଙ୍କୁ ଲାଭ କରିବା ପାଇଁ ପ୍ରାଣରେ ବ୍ୟାକୁଳତା ଆସେ କାହିଁକି ? କବିଙ୍କ ଚିନ୍ତା ଅନୁସରଣ କରି ବୁଝାଅ ।

୩ । ଶ୍ରୀପଦ, ଅନନ୍ତ, ଅକିଞ୍ଚନ, ଅଗତି—ଏଗୁଡ଼ିକର ବ୍ୟାସବାକ୍ୟ ଲେଖ ।

୪ । କରାଳ, ଆଜ୍ଞା, ନିର୍ମାଣ, ସମ୍ପଦ, ଦୁର୍ଗତି, ଜଞ୍ଜାଳ ଓ ବିରାଜିତ—ଏ ପଦ ଗୁଡ଼ିକ ମଧ୍ୟରୁ ବିଶେଷ୍ୟକୁ ବିଶେଷଣ ଓ ବିଶେଷଣକୁ ବିଶେଷ୍ୟରେ ପରିବର୍ତ୍ତିତ କର ।

୫ । ବିଭୁଙ୍କଠାରେ କବି କି କି ପ୍ରାର୍ଥନା କରୁଅଛନ୍ତି, ସେସବୁ ଉଲ୍ଲେଖ କର ।

---

## ଅମର୍ଷୀ-ବାଣୀ †

"ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ଭୁଞ୍ଜୁଛନ୍ତି କି ଆର୍ଯ୍ୟ ନାମ (୧) ଦାୟାଦ ଜଗତେ ?

---

† ପୃଥ୍ୱୀରାଜ ମହମ୍ମଦ ଘୋରୀର ଦ୍ୱିତୀୟ ଆକ୍ରମଣର ସମ୍ମୁଖୀନ ହେବାକୁ ଯିବାବେଳେ ତାଙ୍କ ପକ୍ଷର କେତେକ ସୈନ୍ୟ ଓ ସେନାପତି ରଣୋଦ୍ୟମ ପ୍ରତି ଉତ୍ସାହ ନ ଦେଖାଇ ଶତ୍ରୁ ସଙ୍ଗେ ସନ୍ଧି କରିବାର ପ୍ରସ୍ତାବ କରିଥିଲେ । ଏଥିରେ ପୃଥ୍ୱୀ-ସେନାପତି ଅମର୍ଷୀ ହିନ୍ଦୁବାହିନୀଙ୍କୁ ଏପରି ଉନ୍ମାଦନାମୟୀ ବାଣୀ ଶୁଣାଇଥିବାର ଆମ୍ଭେମାନେ ବରେଣ୍ୟ କବି ରାଧାନାଥଙ୍କ ମହାଯାତ୍ରା ମହାକାବ୍ୟରେ ପାଉଁ ।

(୧)—ଉତ୍ତରାଧିକାରୀ ।

ବିନା ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର, ତାଙ୍କରି ଶୋଣିତ
ବହୁଛି କି ଅଦ୍ୟ ଯୋଦ୍ଧେ ! ତୁମ୍ଭ ଧମନୀରେ ?
ଧିକ, ଧିକ, ଶତ ଧିକ, ଧିକ ଏ ମନ୍ତ୍ରଣା !
ଏ ହୀନ ମନ୍ତ୍ରଣା, ଭୀରୁ ପାମର-ଉଚିତ,
ଉଚ୍ଚାରି ଯା କଲ ଶୂରେ, ଅପବିତ୍ର ଆଜି
ନିଜ ମୁଖ, ଶ୍ରୋତା କର୍ଣ୍ଣ, ଆର୍ଯ୍ୟ ବଂଶଧରେ
ଅବା ଅଭାଜନ ତୁମ୍ଭେ ଏ ନାମ ଧାରଣେ ।
ଭୀରୁତା ଯେ ସେହି ସିନା ବୀରର ମରଣ !
ଭୀରୁଭାବ ବହି ତୁମ୍ଭେ ମୃତ ଏ ଜଗତେ !
ଲୋଡ଼ଇ କି କେହି କେବେ ମୃତର ମନ୍ତ୍ରଣା ?
ପଳାଇ ଏ ରଣସ୍ଥଳୁଁ ଜୀବିବ କି ପାଇଁ
ଚିରଦିନ ଭବେ ? ଯେବେ ନାହିଁ ଏ ଦୁରାଶା,
ନିଜ ମୁଖ, ପିତୃ ନାମ ବୃଥା କଳଙ୍କିତ
କରିବ ଏ ରୂପେ କିମ୍ପା ପ୍ରାଣଭଙ୍କ ମୂଢ଼େ ?

× × × ×

ଦିଗ୍‌ବିଜୟୀ ଆର୍ଯ୍ୟସିଂହ ଔରସେ ଜନମି
ହେଲ କି ଅକ୍ଷମ ଆହା ନିଜସ୍ୱ ରକ୍ଷଣେ ?
ହିମ ଊର୍ଜସ୍ୱଳ-ଭୀମ-ହିମାଦ୍ରି ପ୍ରାଚୀରେ
ଦୁର୍ଗମ ଭାରତ-ଦୁର୍ଗ କାପୁରୁଷ ହାତେ—
କେ କହିବ ମୋତେ, କିମ୍ପା ଅର୍ପିଲେ ବିଧାତା ?
ହା ଦୈବ ଜମ୍ବୁକ ପଶି ହର୍ଯ୍ୟକ୍ଷ-ଗୁହାରେ
ଗୋଇଠା ପ୍ରହାରି ନେବ ତା ମୁଖୁଁ ଓଠାର

ଗ୍ରାମ ତାର, ହର୍ଯ୍ୟକ୍ଷ ତା ସହ୍ୟବ ମଜନେ !
ଏ ଲାଞ୍ଛନା ଥିଲାଟି କ ଅଦୃଷ୍ଟେ ଲଲାଟେ ?
ଆତଙ୍କେ ଯେ ହର୍ଯ୍ୟକ୍ଷର ଭୈରବ ଗର୍ଜନେ
(୨) ପଶିଥିଲା ଏ ଜମ୍ବୁକ ନିଜ ବଳେ ଯାଇ
ସେହି ଦିଲ୍ଲୀପତି ପୃଥ୍ୱୀ ଭୂପ୍ତର ଅଗ୍ରଣୀ
ଏ ସଂଗ୍ରାମେ; ସେହି ଶତ୍ରୁ-ଶୋଣିତପିପାସୁ
କୃପାଣ ତାଙ୍କର ପୁଣି ନିଷ୍କୋଷିତ ଆଜ,
ସେହି ଧ୍ୱଜ ପଟ ପୁଣି ଉଡ଼ଇ ସମୀରେ !

× × × ×

ଏତେ ମାୟା ପ୍ରାଣେ ଯେବେ, ତେଜ ରଣଭୂମି
ସଙ୍ଗୋଳ ସ୍ୱରୂପେ ଭୂମ୍ଭ ରଙ୍କ ପ୍ରାଣ ନେଇ
ବାନ୍ଧ ରଖ ଗୃହେ ଯାଇ ନାରୀ ବସ୍ତ୍ରାଞ୍ଚଳେ ।
(୩) ହେ ନାରୀଏ ! ଘୃଣାସ୍ପଦେ ନର-ଦେହ-ଧାରୀ !
ବାହୁଡ଼ ସ୍ୱଗୃହେ ବେଗେ କଳଙ୍କିତ ମୁଖେ
ଲାଙ୍ଗୁଳ ସଙ୍କୋଚି ଶ୍ୱାନ ପଳାଏ ଯେସନେ

× × × ×

ବାହୁଡ଼ ସ୍ୱଗୃହେ ବେଗେ ! ଖଡ୍ଗ ଶୂଳ ଆଦ
ଭୂଷଣ ନ ହୋଇ ଯାହା ମହାଭାର ଏବେ,
ଫିଙ୍ଗି ଦିଅ, ଏହି ତାଲ ସିନା ଚଳାଅ, ଲୋତକ ?
ସେହି ଢାଳିଲେ ଆତ୍ମରକ୍ଷା ଅଟେ ଏବେ ।

---

(୨)—ପ୍ରଥମ ଆକ୍ରମଣରେ ମହମ୍ମଦ ଘୋରୀ ପୃଥ୍ୱୀଙ୍କ ଦ୍ୱାରା ପରାସ୍ତ ହୋଇ ନିଜ ଦେଶକୁ ପଳାଇ ଯାଇଥିଲେ । (୩)—ନାମତଃ ନର; କିନ୍ତୁ ସ୍ୱଭାବ-ଚରିତ୍ରେ ନାରୀ ପରି ।

ବିଳାସର କ୍ଷେତ୍ର ନୁହେଁ ସଂଗ୍ରାମ-ଅଗଣା;
ତପସ୍ୟାର କ୍ଷେତ୍ର ଏହୁ ତପସ୍ୱୀ-କାଂକ୍ଷିତ
ବିପଦର ଯଜ୍ଞବେଦୀ, ଜୀବନ ଆହୁତ,
ଧଅନ୍ତ ଅହ୍ଲାଦେ ଯହିଁ ଯଶୋଲିପ୍‌ସୁ ବୀରେ ।
ତୁମ୍ଭ ପର (୪) ଶ୍ୟାମିକାର ରେଖା ଏ ନିକଷେ,
ପଡ଼ିବାର ଲେଖିନାହିଁ ବିଧି କେଉଁ କାଳେ !
କ ସାହସେ କଲ ତୁମ୍ଭେ ଅପବିତ୍ର ଆସି,
ଏ ତୀର୍ଥ ଆର୍ଯ୍ୟର (୫) ଏହି ଧର୍ମଯୁଦ୍ଧସ୍ଥଳୀ ?
ଆର୍ଯ୍ୟ ନାମେ ଏ କାଳିମା ବୋଳିଲ କମାଇ ?
ଆସ ହେ ସଂଗ୍ରାମ-ସିଂହ ଅଜାମିଳ ବୀରେ
ଏ ମହା କଳଙ୍କ ଯାଇ ପ୍ରକ୍ଷାଳିବା ଖରେ
ରଣକ୍ଷେତ୍ରେ ରିପୁ-ଶୋଣିତେ, ଅବା ନିଜ ଶୋଣିତେ;
ବଞ୍ଚିତ ତୁମ୍ଭର ଶୂଳ, ରିପୁରକ୍ତ ସ୍ୱାଦୁଁ
ବହୁ ଦିନୁଁ, ଦିଅ ତାଙ୍କୁ ଶୋଣିତ-ପାରଣା,
ଶତ୍ରୁ ଦେହେ ତାଙ୍କ ମୁନ ପୁଣି ଦିଅ ଶାଣି;
ଆସ ବେଗେ ରଣ ସ୍ଥଳୁଁ ଜିଙ୍କି ମହୋଲ୍ଲାସେ
ଆଣିବା ବିଜୟଲକ୍ଷ୍ମୀ, ନ ପାଇଲେ ତାହା
ବୀରଶେଯେ ଆଶ୍ରିବା ତ ନିଜ ହାତ କଥା

× × × ×

ମନ୍ତ୍ର ଯା ମଳିବ କର୍ମେ, ରହ ଧର୍ମ ଧର;
'ମନ୍ତ୍ର ସାଧନ ଅବା ଶରୀର ପାତନ'

---

(୪)—ଭେଲ ସୁନା । ତୁମ ପର ଭେଲ ସୁନାର ରେଖା **ଯୁଦ୍ଧ ପର କଷଟି** ପଥରରେ ପଡ଼ିବ ନାହିଁ । (୫)—ସ୍ୱଦେଶ ରକ୍ଷାର୍ଥ **ଯୁଦ୍ଧ** ଧର୍ମ-**ଯୁଦ୍ଧ** । ପରରାଷ୍ଟ୍ର ଗ୍ରାସ ପାଇଁ **ଯୁଦ୍ଧ** ପାପ **ଯୁଦ୍ଧ** ।

ଅର୍ଯ୍ୟର ଯା ସାର ଧର୍ମ ପାଇ ଅର୍ଯ୍ୟ କାରେ ?
ଅର୍ଯ୍ୟ-କୁଳ-ଧ୍ୱଜ ପୃଥ୍ୱୀରାଜଙ୍କ ଗହଣେ ।"

—ସ୍ୱର୍ଗୀୟ ରାଧାନାଥ (ମହାଯାତ୍ରା)

## ପ୍ରଶ୍ନ

୧ । ଏ ପଦ୍ୟର ଉପଦେଶାବଳୀ କବି କାହା ମୁଖରେ କାହା ପାଇଁ ଦେଇଛନ୍ତି ?

୨ । ବିନା ଯୁଦ୍ଧରେ ସୂଚ୍ୟଗ୍ର ମେଦିନୀ ଦେବି ନାହିଁ—ଏହା କେଉଁଠାରେ କିଏ କାହାକୁ କହିଥିଲା ?

୩ । ନିମ୍ନଲିଖିତ ପଦ୍ୟାଂଶ ଗୁଡ଼ିକର ବ୍ୟାଖ୍ୟା ଲେଖ:—

(କ) ହିମ-ଉର୍ଜସ୍ୱଳ-ଭୀମହିମାଦ୍ରୀ-ପ୍ରାଚୀରେ.........କମ୍ପା ଅର୍ପିଲେ ବିଧାତା ?

(ଖ) ହେ ନାରୀଏ ! ପୁଣ୍ୟଗର୍ଭରେ ନର ଦେହଧାରୀ !

(ଗ) ତୁମ୍ଭ ଯୋଗ୍ୟ ତାଲ ବିନା......ଆଚରିବ ଏବେ ।

(ଘ) ବିଳାସର ସେବ ନୁହେଁ......ତପସ୍ୱୀ-କାଙ୍କ୍ଷିତ ।

୪ । ଭୀରୁ ପାମର ଉଚିତ ହିମ ଉର୍ଜସ୍ୱଳ ଭୀମ, ଶତ୍ରୁ-ଶୋଣିତ ପିପାସୁ, ତପସ୍ୱୀ-କାଂକ୍ଷିତ, ଯଶୋଲିପ୍ସୁ, ଆର୍ଯ୍ୟକୁଳ-ଧ୍ୱଜ— ଏହି ପଦଗୁଡ଼ିକର ବ୍ୟାସବାକ୍ୟ ଲେଖି ସମାସ ନିର୍ଦ୍ଦେଶ କର ।

---

# ଦେବାବତରଣ

ଏବକାଳ ଲୋକେ ଯିବ କ ପରତେ ?
ଶୁଣିଛୁ ମୁଁ ଯାହା ଶୁଣ ହେ ତେବେ,
ବେଳେ ବେଳେ ଆସି ସ୍ବରଗୁଁ ଦେବତା
ମାନବବ୍ୟବହାର ରଚନ୍ତି ଭବେ ।
ଲଭନ୍ତି ମାନବ— ଜନମ ସେ ଏଥି,
ନର ପର ଭୁଲି ରହନ୍ତି ସୁଖେ,
ମରତ-ବିଳାସେ ବିଗ୍ରହ-ବିଭବେ
ରସନ୍ତି ସେ ଏହି ମାନବ-ଲୋକ
ବାଲ୍ମୀକି ପଗ ଗାଇଛନ୍ତି ଗୀତ
ରାମଚନ୍ଦ୍ର କଥା ଶୁଣିଛ ବାବୁ,
ପୁରାଣେ ପୁରାଣେ ଶୁଣିଥିବ କେତେ
ଅଭିଶାପେ ଦେବେ ଭୁଲନ୍ତି ସବୁ ।
ସୁରକୁଳେ ଜାତ ବହାରନ୍ତି ପୁଣି
କରନ୍ତି ମରତେ ଦେବତା ମାନେ,
ଭୁଲି ସେ ରହନ୍ତି ନରଲୋକ ଧରି,
ଚେତାଇଲେ ପୁଣି ପଡ଼ଇ ମନେ ।
ମର୍ତ୍ତ୍ୟଲୋକେ କେତେ ସଙ୍କେ ଆସନ୍ତି
ସରଗୁଁ ଦେବତା ସୁର-ସୁନ୍ଦରୀ,
ଏ ମରତେ ପୁଣି ଆଦର ବସନ୍ତି
ତୀର୍ଥନାମେ ପୁର ବପିନ ଗିରି ।
ସରଗେ ତ ବାବୁ ଅଛୁ ଶର ସୁଖ,
ଶର ଯଉବନ ସମ୍ଭୋଗ ଶର,

ନନ୍ଦନେ ମଳୟ                    ଚିର ବଇଭବ,
ଚିର ତହିଁ ଶୁଭ୍ର ତପନକର ।
ସମ ବଇଭବେ                    ଅଛଇ କି ସୁଖ ?
ବିଷମେ ସିନା ଏ ପରାଣ ଖେଳେ,
ଧବଳେ ଧ୍ୱସଇ                    କାନନ ଧରଣୀ
ରଜନୀ-ତାମସ-ସ୍ମରଣ ବେଳେ ।
ବ୍ରତତୀ-ଗହଳେ                    ତରୁ-କୁଞ୍ଜମାଳେ
ସୁନ୍ଦର ଦିଶଇ ଶବଳ ବିଭା,
ଶ୍ରମ-ପରେ ସିନା                    ଆଶ୍ରମ-ସମ୍ପଦ
ପ୍ରବୀଣତା ସିନା ଲୋଡ଼ଇ ଯୁବା ।
ତେସନେ ବରଜି                    ସ୍ୱରଗ-ଭୁବନ
ଆସନ୍ତି ଦେବତା ମର୍ତ୍ତ୍ୟ-ବାଧାରେ,
ବିଷ୍ଣୁପଦ ଶିବ—                    ଜଟା ଛାଡ଼ ଗଙ୍ଗା
ଆସନ୍ତି ବିପିନ କେଦାର ମାଳେ ।

## ପ୍ରଶ୍ନ

୧ । ଏ ପଦ୍ୟର ବିଷୟ କିଏ କାହାକୁ କହୁଛି ?

୨ । ପଦ୍ୟାଂଶଗୁଡ଼ିକର ବ୍ୟାଖ୍ୟା କର:—

(କ) ସମ ବଇଭବେ ଅଛନ୍ତି······ପରାଣ ଖେଳେ ।

(ଖ) ବ୍ରତତୀ-ଗହଳେ······ଶବଳ ବିଭା ।

(ଗ) ଶ୍ରମ ପରେ ସିନା······ଲୋଡ଼ଇ ଯୁବା ।

୩ । ବ୍ରତତୀ, ସମ୍ପଦ, ନନ୍ଦନ, ସମ୍ଭୋଗ, ସ୍ୱର୍ଗେ—ଏଗୁଡ଼ିକର ପ୍ରକୃତିପ୍ରତ୍ୟୟ ଦିଅ ।

---

## ସନ୍ତଜନ

ଶୁରୂପା (୧) ପ୍ରାୟେକ ସନ୍ତ ଉଦାର ଅଟଇ
ସେ ଯେସନେ ସୁଦ୍ରବ୍ୟ ରଖି କୁଦ୍ରବ୍ୟ ତେଜଇ ।
ଚାଲୁଣି ଜନାର ପ୍ରାୟ ଅସନ୍ତର ଗର୍ବ
ସୁଲାଗି ପକାଇ ସେ ଅଲାଗି ରଖେ ସର୍ବ ।
ତାର ପ୍ରାୟେ ପରଗୁଣ ଗଳାଇ ପକାଇ
ଅନ୍ୟ ଦୋଷ ବୁଛି କରି ପସରା ଧରଇ ।
ସନ୍ତ କହେ ପର ଗୁଣ, ଆପଣାର ଦୋଷ
ଗୁରୁ ବଇଷ୍ଣବ ସେବା ନ ସହଇ ଲେଶ ।
ଏତେକ ପ୍ରକାରେ ସନ୍ତ ମାହାତ୍ମ୍ୟ ମହିମା
ସନ୍ତ ହୋଇ ନ ଭାବଇ ଅହଙ୍କାର ସୀମା ।
ପର ଦୁଃଖେ ଦୁଃଖୀ ସନ୍ତ, ପର ସୁଖେ ସୁଖୀ
ପରମ କାରଣେ (୨) ସନ୍ତ ନୋହେ ମନଃ-ଦୁଃଖୀ ।
ହାନି ଲାଭ ବସ୍ତୁରେ ସର୍ବତେ ଗରୁ (୩) ଭାର
କାହାର ଠାବରେ ସନ୍ତ ନୋହେ ଅବେଭାର ।
ସର୍ବ ସୁଖ ମିଳଇ ପ୍ରାପତ (୪) ସନ୍ତସଙ୍ଗ ;
ସକଳ କଳଙ୍କ ନିନ୍ଦା ଅସାଧୁ ପ୍ରସଙ୍ଗ ।
ସବୁଙ୍କର ସନ୍ତ ବୁଛି ଯେବେ ସେ ହୁଅନ୍ତା
ଖଡ଼ଗ କମାଣ ବାଣ କମାଇ ବହନ୍ତା ?

---

(୧) ଶୂର୍ପ—କୁଲା । (୨) ପରମ କାରଣେ—ଦୁଃଖ ଲାଗି ଶ୍ରେଷ୍ଠ କାରଣ ଥିଲେ ମଧ୍ୟ । (୩) ଗରୁ—ଗମ୍ଭୀର, ଧୈର୍ଯ୍ୟବନ୍ତ । (୪) ପ୍ରାପତ—ପାଇଲେ ।

ଏକରୁ ଅନେକ ନ ଶଙ୍କାନ୍ତି ମତ୍ତବେଶେ
ତେଣୁ ମହାମର୍ତ୍ତ୍ୟ ହୋଇ ମରନ୍ତି ସକଳେ ।
ନ୍ୟାୟ୍ୟ ନ ବୁଝନ୍ତି ସେ ବୁଝନ୍ତି ଅନର୍ପିତେ *
ମତ୍ତଗର୍ବ ପୁରସ୍କାରେ (୫) ମୋହ ଅନୁବ୍ରତେ (୬)
ଦେଖିବା ମାତ୍ରକେ ଭୟ୍ୟ ଲାଗଇ ଯାହାକୁ
କେସନେ କେ ସନ୍ଥ ବୋଲି ବୋଲିବା ତାହାକୁ
କହିବାରୁ ଡର ତେଣେ ନ କହିଲେ ମର
ସ୍ବଷ୍ଟି ନାଶ ଗଲା ପ୍ରଭୁ ବୁଝିବା ବସ୍ତୁର ।
ଏଥୁଁ ଉଧରେଣ ପ୍ରଭୁ ବେଗ ମୋତେ ନିଅ
ପ୍ରାଲବ୍ଧେ (୭) ଥିଲେ ସନ୍ଥ ପାଦତଳେ ଥୋଅ ।
—ଦେବଦୁର୍ଲ୍ଲଭ ଦାସ (ରହସ୍ୟ ମଞ୍ଜରୀ) ।

## ପ୍ରଶ୍ନ

୧ । କବିଙ୍କୁ ଅନୁସରଣ କରି ସୁଜନ ଓ ଦୁର୍ଜନର ତୁଳନା କର ।

୨ । ଶୁରୂପା, ସୁଲଗି, ଅଲଗି, ସର୍ବତେ, ଗରୁ, ପ୍ରାଲବ୍ଧ ଓ ଅନର୍ପିତେ—ଏଗୁଡ଼ିକର ଅର୍ଥ ଲେଖ ।

୩ । ବିଶେଷ୍ୟକୁ ବିଶେଷଣ ଓ ବିଶେଷଣକୁ ବିଶେଷ୍ୟ କର:—
ନାଶ, ନିନ୍ଦା, ପ୍ରାପ୍ତ, ଦୋଷ, ଲବ୍ଧ ।

---

*ଅନର୍ପିତେ—ଅବିନୟରେ । (୫) ପୁରସ୍କାର—ପୁରଃସର, ସହିତ । (୬) ଅନୁବ୍ରତେ—ସର୍ବଦା । (୭) ପ୍ରାଲବ୍ଧ—ଭାଗ୍ୟ ।

# ବାରବାଟି

ମୋ ଜନମ ଉତ୍କଳର ଇତିହାସ-ଶିରେ
ରାଜଟୀକା ସମ
ହେ ଦୁର୍ଗ ପିରମ,
ତୁମେ ତୁଙ୍ଗ ବାରବାଟୀ ବୀର-ରକ୍ତ-ମାଂସରେ ଗଠିତ,
ଅତୀତର ବକ୍ଷ ପରେ
ଏ ଜାତିର ଜୟସ୍ତମ୍ଭ ପରି
ଦୃଢ଼ ଦୃପ୍ତ ସ୍କନ୍ଧ ଉଚେ ଧରି
ଅଣିଛ ବୁହାଇ ମୌନେ ନିଜଦେହେ ନିଜର ଅତୀତ ।

ଯାଇଛି ବିଶାଳ ରାଜ୍ୟ, ମାନ ସ୍ୱାଧୀନତା,
ରାଜନ୍ୟ ସମ୍ମାନ,
ବୁଦବୁଦ୍ ସମାନ
ସର୍ବଗ୍ରାସୀ ମହାକାଳ ସୁକରାଳ-ଲହରୀରେ ଭାସି;
ତୁମ୍ଭର ସ୍ମୃତିଟି ମାତ୍ର
ଏ ଜାତିର ଅନ୍ତରେ ଅନ୍ତରେ
ଏ ଦେଶର କୋଟିଏ କଣ୍ଠରେ
ରାହୁ ମୁକ୍ତ ଶଶି ସମ କାଳଗର୍ଭୁଁ ଉଠଇ ପ୍ରକାଶି ।

କେତେ ରାଜ୍ୟ, କେତେ ଜାତି ଅତୀତ ଗରଭେ
ଲଭିବେ ଶୂନ୍ୟତା
ଉଦାର ବୀରତା
କେବେ କିନ୍ତୁ ଲଭି ଲଭିବ କି ?
—କ୍ରୂର କାଳ ତାହା ନ ପାରିଛି ।

ପରଲାଗି କାନ୍ଦିଛି ଯେ
ଷଣେ ହେଲେ ହୃଦୟ ଆକୁଳେ
ସମସ୍ତ ସମୁଦ୍ର କୂଳେ କୂଳେ
ତାର ନାମେ ସ୍ମୃତି ପାଇଁ ସମାରୋହେ ଦେଉଳ ଉଠିଛି ।
ପ୍ରସ୍ତର ମୃତ୍ତିକା ସିନା ପଡ଼ୁଅଛି ଖସି,
ଭାଙ୍ଗିଛି ଜଘନ;
ବୀରେନ୍ଦ୍ରଭୂଷଣ,
ରକ୍ତେ ରକ୍ତେ ବୀରତ୍ୱର ବଦାନ୍ୟତା ଉଠଇ ଯା ଫୁଟି
ନ୍ୟାୟ ପାଇଁ, ସତ୍ୟ ପାଇଁ
ହୃଦୟର ଉଷ୍ଣରକ୍ତଦାନ
ପର ପାଇଁ ଢାଳିବାର ପ୍ରାଣ,
କାହା କର ବଳୀୟାନ ଏ ସ୍ମୃତିକୁ ଘେନି ଯିବ ଲୁଟି ?

କେତେ ଶତାବ୍ଦୀର ମହାଗୌରବ, କପାଳେ
ନୀରବେ ନିବେଶି
ହେ ଅମ୍ବରକେଶୀ,
ଆଜ ଏଠି ପଡ଼ିଅଛ ଅଚେତନ ପ୍ରାଣହୀନ ସମ;
ବଶ୍ୱକୀର୍ତ୍ତି-ସଭା ପାଶେ,
ଦୁଃଖ ହୁଏ ଆଜ କୀର୍ତ୍ତିମାନ,
ନାହିଁ ତବ ଗରିମାର ସ୍ଥାନ ।
ତବ ଅବସାନ ସହ ଆସିଅଛି ଜାତର ସମ୍ଭ୍ରମ !

ସେ ଦିନ ହେ ସୌଭାଗ୍ୟର ମୁଖର ମଧ୍ୟାହ୍ନେ
କେତେ ବୈତାଳିକ
ଅଦମ୍ୟ, ନିର୍ଭୀକ

ତୁମ୍ଭର ଚରଣତଳେ ଗାଇଥିବେ ବନ୍ଦନାର ଗାନ,
କେତେ ଲକ୍ଷ ରାଜମଥା—
ଫୁଲ୍ଲପୁଷ୍ପଜନିତ ବାସନା—
ଯେମନ୍ତ ହେଉଥିବ ଆରାଧନା,
ପଦପ୍ରାନ୍ତେ ଗଡ଼ୁଥିବ କୋଟି କୋଟି ଲୋକର ସମ୍ମାନ !

ତୁମ୍ଭର କଣ୍ଠାଘାତେ କୃଷକବାହିନୀ
ଢାଲ ତରବାରି
ଧରଣ ବାହାର
କେତେ ରାଜ ଅଧିରାଜେ ଅନାୟାସେ ନୁଆଁଇଲେ ତଳେ;
କେତେ ଶତ ସିନ୍ଧୁଯାନୀ
ବାହୁଥିର ମହାବକ୍ଷ ଖୋଳ
ମହାମୂଲ୍ୟ ମଣିମୁକ୍ତାରାଜ
ପ୍ରାଣର ଈପ୍‌ସିତ ସମ ଲମ୍ଭାଇଲେ ପୂଜ୍ୟ, ତବ ଗଳେ ।

ତରୁଙ୍ଗ ବକ୍ଷରେ ତବ, ପୁଣି ଥିଲ ଧରି
ଆତ୍ମା ତୁଙ୍ଗତର
ଉଦାର ଅମର,
ଦୁର୍ବଳର ରକ୍ଷା ପାଇଁ ଅରି ଅସ୍ତ୍ରେ ଦେଲେ ଯେ ଶୋଣିତ,

ନିଜ ଦେଶ ନିଜ ଧର୍ମ
ନିଜ ମାତା ଭଗିନୀର ମାନ
ରଖିବାକୁ କଲେ ଅଭିଯାନ
ଶତ୍ରୁର କମାଣମୁଖେ ହସି ଗାଇ ମରଣ-ସଙ୍ଗୀତ ।

ଜନ୍ମ-ଉତ୍ସବ ବେଳେ ନାରୀ ମନସ୍ୱିନୀ
ନୂପୁର-ନିକ୍ୱଣେ,
ହୁଳହୁଳି ସ୍ୱନେ;
ବନ୍ଦାପନା କରୁଥିଲେ ବୀର କାନ୍ତ ପାଶେ ହୋଇ ଛିଡ଼ା,
ସେହିପୁଣି ଥର ଆଗେ
ସତୀଧର୍ମ ରଖିବାର ପାଇଁ
ଅସି-ହସ୍ତେ କଲେ ଯେ ଲଢ଼ାଇ
ତବ ମୌନ ଆମନ୍ତ୍ରଣେ ତେଜି ହେଲେ ଅବରୋଧ ବ୍ରୀଡ଼ା !
ସବୁ ଆଜ ସ୍ୱପ୍ନସମ ଯାଇଛି ହେ ଭାସି—
ମହତ୍ୱ ଗରିମା
ହୃଦୟ ଭଙ୍ଗିମା;
ତୁମର ପତନ ସଙ୍ଗେ ମହାଜାତି ମିଶିଛି ଭୂତଳେ,
ମହାରାଜା ମହାସାମନ୍ତେ
ମନ୍ତ୍ରୀ କେଣି ନ ଫେରନ୍ତି ଦେଶେ;
ଗୃହହୀନ୍ୟ ଜାତି ଦୀନ ବେଶେ
ଗୃହ ତେଜି ଭିକ୍ଷା ପାଇଁ ଲୋଟେ ଯାଇ କାହା ପଦ ତଳେ ।

## ପ୍ରଶ୍ନ

୧ । କବିଙ୍କ ଚିନ୍ତା ଅନୁସରଣକରି ଉତ୍କଳର ଅତୀତ ସୌଭାଗ୍ୟ ଓ ବର୍ତ୍ତମାନ ଦୁର୍ଭାଗ୍ୟର ଚିତ୍ର ଦିଅ ।

୨ । ନିମ୍ନଲିଖିତ ପଦ୍ୟାଂଶଗୁଡ଼ିକର ସରଳାର୍ଥ ଲେଖ:—

(କ) ସର୍ବଗ୍ରାସୀ ମହାକାଳ···କାଳଗର୍ଭୁଁ ଉଠଇ ପ୍ରକାଶି
(ଖ) ଘର ଲାଗି କାନ୍ଦନ୍ତୁ ଯେ,···ଦେଉଳ ଉଠିଛୁ ।
(ଗ) ନ୍ୟାୟ ପାଇଁ ସତ୍ୟ ପାଇଁ···ଘେନାଯିବ ଲକ୍ଷ ?
(ଘ) ଉତ୍ତୁଙ୍ଗ ବକ୍ଷରେ ତବ···ଗାଇ ମରଣ ସଙ୍ଗୀତ ।

୩ । ରାଜକଣ୍ଠୀକା, ଜୟସ୍ତମ୍ଭ, ରାହୁମୁକ୍ତଶଶୀ, ଅମ୍ବରକେଶୀ, ଶତାବ୍ଦ ଫୁଲ୍ଲପୁଷ୍ପଜନିତ ବାସନା ଓ କୃଷକବାହୁମାନେ—ଏପଦଗୁଡ଼ିକର ବ୍ୟାସବାକ୍ୟ ଲେଖ ଓ ସମାସ ନିର୍ଦ୍ଦେଶ କର ।

୪ । ଉଦାର, ବଳୀୟାନ୍, ହୀନ, ସୌଭାଗ୍ୟ, ଅବସାନ, ଅଭିଯାନ—ଏଗୁଡ଼ିକର ବ୍ୟୁତ୍ପତ୍ତି ଲେଖ ।

---

## ହଂସ-ହତ୍ୟା

ଧବଳ ରାଜହଂସ, ରକ୍ତ ତା ଗ୍ରୀବା
ସ୍ଥୂଳ-ଗ୍ରଥିତ ମଣି ମାଳିକା କିବା ।
ସୁବର୍ଣ୍ଣ-ଚଞ୍ଚୁ ପୃଷ୍ଠ, ହଂସୀଟି ତାର
ସ୍ନେହରେ କୋଳାନ୍ତି କ ହରିଦ୍ରାସାର ।

ବିହରୁଥିଲା କେଉଁ ସରସୀଜଳେ
ପ୍ରେୟସୀ ଘେନି ସାଥେ ପ୍ରଣୟଭରେ,
ନିର୍ମମ ଆତତାୟୀ ମନୁଷ୍ୟ କାହିଁ
ଆଣିଲା ଧରି ଜିହ୍ୱା-ଲାଳସା ପାଇଁ !

ଆଣିଲେ ସେହିଦିନ ଗୃହେ, କରୁଣ ରବ;
କରି, ସେ କରୁଥାଇ ଦୁଃଖ ଲାଘବ;

ଦୁର୍ବଳ ପକ୍ଷ ଝାଡ଼ ମୁକତ ଲାଗି
ଚେଷ୍ଟା ବା କରୁଥାଇ ବନ୍ଧନ ଭାଙ୍ଗି ।

ମୁକତ ଚେଷ୍ଟା ଫଳେ ବନ୍ଧନ ବଢ଼େ
କରୁଣତର ହୋଇ ମଗଲ ରଡ଼େ
ଲୁବ୍ଧ କେ ବଙ୍କ କରି ଗ୍ରୀବା ତାହାର
କହେ, 'ଦେଖାଉ ଆଉ କେତେ ଗୁମର !'

ସନ୍ଧ୍ୟାରେ ଅସିଥିଲା, ନିଶା ବାକି
ଯାପିଲା ନିଦ୍ରାହାରେ, କରୁଣେ ଡାକି ।
ପ୍ରଭାତେ ଦେଖାଗଲା ଅବଶ ପକ୍ଷୀ
ପଡ଼ିଛି ଶୋଇ ଗ୍ରୀବା ପିଠିରେ ରଖି ।

'ଅଉରି ମରି ନାହିଁ'—ଦେଖି କହିଲେ,
ମାଂସାଶୀ ଗୃହସ୍ୱାମୀ ସବା ସହିଲେ,
'ହଅ ନା ଶେଷ କରି, ରହିବ କାହିଁ ?'
'ଅସିଛି ଏତେ କଷ୍ଟେ, ଜାଲରେ ନାହିଁ ।'

ପାଶେ ମୁଁ ଥିଲି ଠିଆ ଅନାଇ ହଂସେ
ଦେଖାଇ ବୋଇଲେ ସେ ମଧୁର ହସେ,
"କାହିଁରେ, ଦେଖି ଦେଖି, ମୋଉଲ୍ ବେକ,
ପାରିବୁ !—ଅନାଡ଼ି ତୁ !—ଆନରେ ଡାକ ।"

ନିର୍ବୋଧ ଶିଶୁ ମୁହିଁ, ବୟସ୍କ ଆଗେ
ଯୋଗ୍ୟତା ଦେଖାଇବା ଜୀବ୍ର ସରାଗେ

ଧଇଲା ମୃତ ପ୍ରାୟ ପକ୍ଷୀର ଗ୍ରୀବା ।
ମୋଡ଼ିଲା ବଳେ, ଇକ୍ଷୁଦଣ୍ଡ ସେ କିବା ।

ମରଣେ ମୁକ୍ତି ଲଭି ଚଳିଲା ହଂସ
ଶେଳ ବିନ୍ଧୁଛି ସଦା ସ୍ମୃତି ନୃଶଂସ ।
ନିଜରେ ମରଣ ମନେ ମୁଁ ଆତତାୟୀ,
ଭୁଲଇ ସେ ପାପର କ୍ଷାଳନ ନାହିଁ ।

ସେ ନିଶା, ସେ ମଙ୍ଗଳ, ସେ ଜୀବହତ୍ୟା
ହନ ହନକେ ମନେ ପଡ଼େ ଅଗତ୍ୟା
ଭଗ୍ନ ତା' ଗ୍ରୀବାଦଣ୍ଡ, ମୃତ ଶରୀର
କରୁଛି ହୃଦେ ବହୁ କ୍ଷତ ଗଭୀର ।

ସେ ହନ ସେ ମଙ୍ଗଳ ରକ୍ତ ଉପାସେ
ହଂସିନୀ କଥା ତାର ପ୍ରତି ନିଃଶ୍ୱାସେ
ଭାବି କି ନାହିଁ ଥିବ, କ୍ଷୁଦ୍ର ମୃଣାଳ
ସ୍ନେହରେ ପରସ୍ପରେ ଖୁଆଇବାର ?

ହଂସୀଟି ତାର ଦୂରେ ଉଦ୍‌ଗ୍ରୀବ ହୋଇ
ଚଞ୍ଚୁରେ ଚଞ୍ଚୁପୂର୍ଣ୍ଣ ଆହାର ଥୋଇ
କୁଳାୟୁ ବାସେ ଅଭ ପ୍ରଣୟୀ ଆଶେ
ଗୃହୁଁ ସେ ଥିବ ନିକ ତକ୍ତ ନିରାଶେ !

ସେ ଦୁଇ ଜୀବନର ସେ ଯେ ନିରାଶା !
ଅପୂର୍ଣ୍ଣ ସୁଖ-ସ୍ୱାଦ, ଅବ୍ୟକ୍ତ ଭାଷା

ଏ ଅପରାଧୀ ପ୍ରାଣେ ତୀବ୍ର ଧିକ୍କାର
ଦିନ ଦିନଲେ କରୁଅଛୁ ସଞ୍ଚାର ।

## ପ୍ରଶ୍ନ

୧ । ପଦ୍ୟଟିର ସାରକଥା ନିଜ ଭାଷାରେ ଲେଖ ।

୨ । ନିମ୍ନଲିଖିତ ପଦ୍ୟାଂଶଗୁଡ଼ିକର ସରଳାର୍ଥ କହ:—

(କ) ସୁବର୍ଣ୍ଣ-ଚଞ୍ଚୁ-ପୁଚ୍ଛ, ହଂସୀଟି ତାର···ହରିଦ୍ରାସାର ।

(ଖ) ନିର୍ବୋଧ ଶିଶୁ ମୁହିଁ···ଇକ୍ଷୁଦଣ୍ଡ ସେ କିବା ।

(ଗ) ହଂସୀଟି ତାର ତୁରେ···ଭକ୍ତ ନିରାଶେ ।

(ଘ) ସେ ଦୁଇ ଜୀବନର ସେ ଯେ···କରୁଅଛୁ ସଞ୍ଚାର ।

୩ । ବିଶେଷ୍ୟକୁ ବିଶେଷଣ ଓ ବିଶେଷଣକୁ ବିଶେଷ୍ୟ କର:—
ସ୍ମୃତି, ଷାଳନ, ମୃତ, ଭକ୍ତ, ସ୍ନେହ, ଅପୂର୍ଣ୍ଣ, ସଞ୍ଚାର ଓ ଲାଘବ ।

---

# ଗୋପ-ତର୍ପଣ

( ୧ )

ଜୟ ହେ ଶାନ୍ତ, ସତ୍ୟର ପୁରୋହିତ,
ସନ୍ନ୍ୟାସୀ, ଋଷି, ଅବତାର ପରହିତ ।
ଜୟ ହେ ଅଖିଳ ପତିତ-ଜନର ବନ୍ଧୁ,
ଓଡ଼ିଆର ଅତି ଆପଣାର ଗୋପବନ୍ଧୁ ।

( ୨ )

ତୁମେ, ସନ୍ନ୍ୟାସୀ ପରି ରଚିଲ ବକୁଳବନ,
ଗାଇଲ କଣ୍ଠେ ସତ୍ୟଯୁଗର ଗାନ,
ପାଖେ ଯେ ଆସିଲେ ପୁରୁଷ ଭାଗ୍ୟବାନ
କରିଲ ତାଙ୍କୁ ସଂଯମ-ଗରୀୟାନ ।
ତୁମର କଣ୍ଠେ ମିଶାଇ କଣ୍ଠବାଣୀ
ସଭିଏଁ ଗାଇଲେ ମୁକ୍ତିର ଆହ୍ୱାନୀ ।

( ୩ )

ତୁମେ, ବାହାର ପଡ଼ିଲ ଭିକ୍ଷାର ଝୁଲି ଧରି
ଘାଟେ ଘାଟେ ନେଇ ଭଡ଼ିଲ ତୁମର ତରୀ ।
ଯାହା ପାଖେ ଗଲ ସେ ଦେଲା ଅଜାଡ଼ି କାନି
ମହା ଭିଖାରିର ମହା ଇଙ୍ଗିତ ମାନି ।
ସକଳେ କହୁଲେ, 'ଆସ, ସନ୍ନ୍ୟାସି, ଆସ,
ପରଶେ ଫେରାଅ ହତଭାଗ୍ୟର ତ୍ରାସ ।'

( ୪ )

ତୁମେ, ଦେଶ ଦେଶ ବୁଲି ଫେରିଛ ଜାତିର ଘରେ
ଭୋଖୀରେ ଦେବାକୁ ଅନ୍ନ ଆପଣା କରେ,
ପାଇଲେ ଯେ ଗଲେ ସାନନ୍ଦେ ଘରେ ଫେରି.
ଅଭୁକ୍ତ ଯେତେ ବେଢ଼ିଲେ ନିକଟେ ଘେରି,
ତାଙ୍କ ପାଇଁ ରେ ବାଢ଼ିଲ ଶ୍ରେଷ୍ଠ ଦାନ
ଦୁଇଟି ଅଶ୍ରୁ, ଗୋଟିଏ ଆଲିଙ୍ଗନ ।
କରୁଣ କୋମଳ ଦୁଇଟି ବଚନ କହୁ
ଦେଲ ଦୁଃଖୀର ବୁକୁର ଦୈନ୍ୟ ଦହୁ ।

ତୁମେ, ସନ୍ନ୍ୟାସୀ, ତୁମେ ଲକ୍ଷ୍ମୀଛଡ଼ାର ବନ୍ଧୁ,
ଓଡ଼ିଆ ଜାତିର ଦରିଦ୍ର ଗୋପବନ୍ଧୁ ।

( ୫ )

ଗରିବର କଥା ଅନ୍ତରେ ଗଲେତ ଜାଣି
ଅନ୍ତରତମେ ଡାକିଲ ବୁଝାଇ ପାଣି ।
ଯର ପାଇଁ ନିଜ ଦେବତାରେ ଅଛ ଡାକି
ବାବାଜୀର ଆଜ କି ବାସନା ଥିଲା ବାକି ?
ବିନ୍ଦୁ ବିନ୍ଦୁ ଶୋଣିତ ଢାଳିଛ ସୁଖେ
ଶାନ୍ତି ଦେବାକୁ ଦୀନ ଦରିଦ୍ର ବୁକେ ।
ବୁଝିବାକୁ ଯାଇ ସକଳ ବୁକୁର ବ୍ୟଥା ।
ସକଳର ପାଇଁ ଦେବାକୁ ବସିଲ ମଥା ।

( ୬ )

ଦରିଦ୍ର ପାଇଁ କରିବାରୁ ସବୁ ଦାନ
ସବୁରି ବୁକୁରେ ପାଇଅଛ ଆଜି ଥାନ ।
ନଇଁବାକୁ ଯାଇ ବିରାଟ ହୋଇଛ ଆପେ
ପୁଣ୍ୟ ଆଣିଛ ଅପସାରି ଅଭିଶାପେ ।
ପତିତ ପାବନ ହୋଇଛ ପତିତେ ବରି
ରାଜା ହୋଇଅଛ ଭିକାର ଝୁଲି ଧରି
ଜୀବନ ଗଳିଲ ସକଳ ଅନ୍ତରାଳେ
କୋଟି ଅନ୍ତର ତୁମରି ଜୀବନ ଭରେ ।
ସକଳର ସୁଖେ ଲୁଚୁଇ ଆପଣା ବ୍ୟଥା
ମାଡ଼ି ବସିଅଛ ସକଳ ଜନର ମଥା ।

( ୭ )

ସନ୍ନ୍ୟାସୀ, ଆଜ ସାରନ୍ତୁ ତୀର୍ଥାଟନ.
ଶେଷ ହୋଇଅଛି ଉପବାସ ବତରଣ,
ଗରୁଡ଼ ପାଇଛନ୍ତି ସୁଧାର ସ୍ୱର୍ଣ୍ଣ-ଝର
କେଉଁ ବଳବାନ ରଖିବ ତାହାରେ ଧରି ?
ଯାଅ ବୀର, ଯାଅ ଧରି ହେ ତୁମର ପଥ,
ଅପେକ୍ଷା କରେ ଦୁଆରେ ଦେବତା-ରଥ
ଆପଣାର ଘରେ ଏଥର ଯିବ ଫେରି
ଦେବତା ନାଚନ୍ତେ ଆନନ୍ଦେ ପାଶେ ଘେରି
କ୍ଷୁଦ୍ର ଲୁଳ ମୁଖ ଉଜଳ ଉଠିବ ଧୀରେ
କଳଙ୍କ ଆସି ପୋଛିବେ ଅଶ୍ରୁନୀରେ,
ଉଠ ଉଠ ହୋଇ ବହିବ ମନ୍ଦାକିନୀ
ତା' ତୀରେ ଗୁଞ୍ଜିବ ତୁମର ଅମାକିନୀ,
ମନେ କି ପଡ଼ିବ ସେବେ ଅମୃତସାଯ୍ୟୀ
ରତ୍ନସିଂହରେ ବକୁଳବନର ଛାଇ ?

### ପ୍ରଶ୍ନ

୧ । କବିଙ୍କୁ ଅନୁସରଣ କରି ଗୋପବନ୍ଧୁଙ୍କ ଜୀବନର ମହତ୍ତ୍ୱ ଫୁଟାଅ ।

୨ । ତଳଲିଖିତ ପଦ୍ୟାଂଶଗୁଡ଼ିକର ସରଳାର୍ଥ ଲେଖ:—

(କ) ତୁମରି କଣ୍ଠେ ମିଶାଇ···ମୁକ୍ତିର ଆହ୍ୱାନ ।

(ଖ) ତାଙ୍କପାଇଁ ରେ ବାନ୍ଧିଲ···ଦୈନ୍ୟ ଦହ ।

(ଗ) ଗହ୍ୱରର କଥା ଅନ୍ତରଗତ···ବାସନା ଥିଲା ବାକୀ ?

(ଘ) ନଇଁବାକୁ ଯାଇ···ଭିକାର ଝୁଲି ଧର ।

(ଙ) ଗରୁଡ଼ ପାଇଛୁ ସୁଧାରୁ···ତାହାରେ ଧର ।

୩ । ବିଶେଷ୍ୟପଦ କର:—ପଣ୍ଡିତ, ସନ୍ନ୍ୟାସୀ, ଭାଗ୍ୟବାନ, ଦରିଦ୍ର, ଶ୍ରେଷ୍ଠ, ବରିଷ୍ଠ ।

୪ । ରତ୍ନାକରର ମହତ୍ତ୍ୱ କାହିଁରେ ପ୍ରକଟିତ ହୋଇଅଛି, ବୁଝାଇ ଲେଖ ।

---

## ଅନିତ୍ୟ ଜଗତ

କେହି ରହି ନାହିଁ ରହିବ ନାହିଁଟି
ଭବ-ରଙ୍ଗ-ଭୂମି ତଳେ,
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।
ସ୍ୱର୍ଣ୍ଣାକ୍ଷରେ ଯାର ନାମ ହୋଇଅଛି
ଅମର ବର୍ଣ୍ଣେ ଅଙ୍କିତ,
ପୁଣ୍ୟଶ୍ଳୋକ-ବୀର ନରପତି ହେଲେ
କାଳକୁଣ୍ଡେ କବଳିତ ।
କାହିଁ ଗଲେ ଇନ୍ଦ୍ର- ଦ୍ୟୁମ୍ନ ମହୀପତି
ଉତ୍କଳ-ଗୌରବ-ରବି
ମାଳାଗଲେ ସ୍ଥାପି ଏହି କୀର୍ତ୍ତି କାହିଁ—
କଳୁଷ-ପର୍ବତ-ପବି ?
କାଳଗର୍ଭେ ଭବେ ଲୀନ ହେଲେ କେତେ
ମହୀପତି ମହାଯଶା,

ହୋଇଅଛୁ ଯାଙ୍କ        ଜୀର୍ଣ୍ଣ ସୌଧ ଏବେ
ବ୍ୟାଘ୍ର ଭଲ୍ଲୁକର ବସା ।
ଶୈବାଳ, ପାଷାଣ—        ଭେଦୀରେ ସଉଧ
ହୋଇଛୁ ନୀଳ ବରଣ;
କୃମି-ତନ୍ତୁଜାଲ        ହୋଇଅଛୁ ଏବେ
ଗବାକ୍ଷର ଆସ୍ତରଣ !
ସ୍ୱର୍ଣ୍ଣ-ଦୀପାଲୋକେ        ଉଠୁଥିଲା ଯହିଁ
ଅଗୁରୁ ଧୂପର ଘଟା,
ତିମିରକୁ ତହିଁ        ବଜନ୍ତ୍ର ବଜନେ
ପକ୍ଷବାତେ ଚମଚଟା ।
ତୋଳିଲେ ଅତୁଳ        ଦୁର୍ଗ ଯେଉଁ ବୀର
ବିରୂପା-ଉଠମା ତୀରେ,
ବିରୂପା ତରଙ୍ଗେ        ବୁଦ୍‌ବୁଦ ପରାଏ
ମିଶିଗଲେ କାଳନୀରେ ।
ଏବେ ସେହି ଦୁର୍ଗୁଁ        ଭୀଷଣ ନିର୍ଘୋଷେ
ପାଷାଣ ହୋଇ ସ୍ଖଳିତ,
ଦୂର ଜନପଦେ        ସୁପ୍ତଜନେ କରେ
ନିଶୀଥେ ଭୀତ ଚକିତ;
ମସ୍ତ୍ରୀ ଅବତଂସ—        ଉଜ୍ଜ୍ୱଳ କେଶରୀ
ରାଜବଂଶ କାହିଁ ଗଲା ?
ବେଢ଼ିଛୁ ଉତ୍କଳ—        କଳେବରେ ଯାର
ଅମଳ କୀର୍ତ୍ତି ମେଖଳା ।
"ସେହି ବଂଶ କାହିଁ ?"        ଏହି କଥା ଯେବେ
ଏକାମ୍ରେ ପୁଚ୍ଛିବ ଯାଇ,

ପ୍ରତିଧ୍ୱନି ଛଳରେ କାନରେ ଦେଇଲା
ପ୍ରତିବାଣୀ ଦେବ "କାହିଁ" ?

× × × ×

ବୃଥା ଦମ୍ଭେ ମାତି ଦିଗ୍‌ବିଜୟୀ ବୀର
ଭ୍ରମୁଥାନ୍ତି ଦେଶେ ଦେଶେ;
ଜେତା ବିଜିତଙ୍କୁ କରାଳ କୃତାନ୍ତ
ପେଷିଦିଏ ନିର୍ବିଶେଷେ ।
ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ
ସମସ୍ତଙ୍କ ଭାଗ୍ୟଡୋର,
ନିଜ ଭାଗ୍ୟଡୋର କାଳହସ୍ତେ ଏହା
ପକାନ୍ତି ହେଲେ ପାଶୋର ।
ଅଜ୍ଞାନେ କଳନା— ଉଦ୍ୟାନେ ଦାମ୍ଭିକ
ଗଢ଼େ ଆଶା-କୁଞ୍ଜମାନ,
ତା ଦେଖି ଅଲକ୍ଷ୍ୟେ ପାଖେ ପାଖେ ଥାଇ
ହସୁଥାଇ ଜନ୍ତୁଗଣ ।
କ୍ରୂର କାଳଚକ୍ର ଘୁରନ୍ତି ମସ୍ତକେ
ଜାଣି ଲୋକେ ହୋନ୍ତି ବଣା,
କପାଇଁ ଲୋଡ଼ନ୍ତି ରଣ ଭୂମିରୂପ
କୃତାନ୍ତ-ରଙ୍ଗ-ଅଗଣା ?
ଅଗ୍ରେ ବାତ୍ୟା ଦେଖି ଜଳେ ଜଳଦସ୍ୟୁ
ଆକ୍ରମେ ବଣିକ-ତରୀ,
ଦିଗ୍‌ବିଜୟ-ବ୍ୟାଜେ ସେହିରୂପେ ପର-
ରାଜ୍ୟ ଆକ୍ରମେ ମସ୍ତରୀ;

ଦସ୍ୟୁ-ବଣିକକୁ ମାରେ ବାତ୍ୟା ଯଥା
ବୁଡ଼ାଇ ଜଳଧି ଜଳେ,
କାଳ ସେହିରୂପେ ଜେତା ବଳୀଙ୍କୁ
ପୂରାଏ ନିଜ କବଳେ ।
ଏ ଭବସାଗରେ ସର୍ବଗ୍ରାସୀ କାଳ
ବାତ୍ୟା ବହେ ଅବିରତ
ଏହା ଜାଣି ଲୋକେ କେଉଁ ଲାଭ ଆଶେ
କଳହେ ହୁଅନ୍ତି ରତ ?

—ସ୍ୱର୍ଗୀୟ ରାଧାନାଥ—'ପାର୍ବତୀ'

## ପ୍ରଶ୍ନ

୧ । ସଂସାର ଅନିତ୍ୟତାର ଗୋଟିଏ ଚିତ୍ର ତୁମ ନିଜ ଭାଷାରେ ଦିଅ ।

୨ । ନିମ୍ନଲିଖିତ ପଦ୍ୟାଂଶ ଗୁଡ଼ିକର ସରଳାର୍ଥ ଦିଅ—
(କ) ସ୍ୱର୍ଣ୍ଣଦୀପାଲୋକ·····ପକ୍ଷବାତେ ଚମକନ୍ତା ।
(ଖ) ମହୀ ଅବତଂସ·····ଅମଳ କୀର୍ତ୍ତି ମେଖଳା ।
(ଗ) କ୍ରୂର କାଳଚକ୍ର·····କୃତାନ୍ତ-ରଙ୍ଗ-ଅଗଣା
(ଘ) ଦସ୍ୟୁ ବଣିକକୁ·····ନିଜ କବଳେ ।

୩ । ଉତ୍କଳ-ଗୌରବ-ରବି, କଳୁଷ-ପର୍ବତ-ପର୍ବ, କୃତାନ୍ତ-ରଙ୍ଗ-ଅଗଣା, ଭବସାଗର—ଏଗୁଡ଼ିକର ବ୍ୟାସବାକ୍ୟ ଲେଖ ।

୪ । କେଶରୀନୃପତିମାନଙ୍କର କ କ କୀର୍ତ୍ତି ଏବେ ମଧ୍ୟ ଉତ୍କଳରେ ଦେଖାଯାଏ ?

---

# ଭୁଲିଯାଅ ଇତିହାସ

ଭୁଲିଯାଅ ଇତିହାସ ଆଜି, ନାହିଁ ଶୁଣ ଅତୀତ କାହାଣୀ,
ସମସ୍ତ ସେ ଧୂଳିଘର ଖେଳ, ମାନବର ଶୈଶବର ବାଣୀ ।
ନର ଆଜି ଯୌବନର ଦ୍ୱାରେ, ନାରୀ ଆଜି ମୁକ୍ତ, ସଚେତନ,
ନିଜ ଭାଗ୍ୟ ଗଢ଼ିବେ ନୂଆରେ, ନବ ବିଶ୍ୱ ହେବ ବିରଚନ ।
ଆଜି ତେଣୁ ବନ୍ଧ୍ୟାଶ୍ରମ ଖାଲି, ଅତୀତର କବର ଖୋଳିବା
କାଳଗର୍ଭେ ଜୀର୍ଣ୍ଣୀକୃତ ଯାହା, ତାକୁ ବସି ବୃଥା ଉଦ୍ଧାରିବା ।
କୋଟି କୋଟି ବାସହୀନ ଆଜି, ଅନ୍ନହୀନ କଉପୀନ ହୀନ
କରିବ କି କୋଟି ଗତ-କାଳି ଆଜିକାର ଦୁଃଖରୁ ଉତ୍ତୀର୍ଣ୍ଣ ?
ବିଶ୍ୱେ ଆଜି ଦୁର୍ଦ୍ଦିନର ମେଘ ନାରୀ ଭୀତ ହେବାକୁ ଜନନୀ,
ଗୃହେ ଆଜି ଅବାଞ୍ଛିତ ଶିଶୁ, ଅନିଶ୍ଚିତ ଜୀବନ-ସରଣୀ ।
ଦରିଦ୍ରର ନାହିଁ ଅଧିକାର ଭୋଗିବାକୁ କରିବ କଳ୍ପନା,
ପୁଞ୍ଜିପତି କୁକୁର ଯା ପାଏ ସେ ଆଶା ତା, ମାତ୍ର ପ୍ରବଞ୍ଚନା ।
ଏ ଯାବତ ଇତିହାସ ଖାଲି ଧନିକର ରାଜାର ବ୍ୟାପାର ।
କେଉଁ ପତ୍ରେ ଲେଖାଅଛି ଗାଥା କୁଟୀରବାସୀ ଦୁଃସ୍ଥ ଜନତାର ?
ଭୁଲିଯାଅ ଭ୍ରାନ୍ତ ଇତିହାସ, ଭୁଲ ରାଜା ଜୟ ପରାଜୟ
ଭୁଲିଯାଅ ବର୍ଣ୍ଣ, ଧର୍ମ ଭେଦ ଆଣ ବିଶ୍ୱେ ନୂତନ ସମୟ ।
ଧରିତ୍ରୀର କଳ୍ପ-କଳ୍ପ-ବ୍ୟାପୀ- ବୟସରେ ନରର ସଭ୍ୟତା ।
ଦିବସର ଦୀର୍ଘ ବ୍ୟସ୍ତତାରେ ଶଯ୍ୟାତ୍ୟାଗ ପରି ଅଳ୍ପ କଥା ।
ଗତ ରାତ୍ର ସ୍ୱପ୍ନ ପରି ତାକୁ ଭୁଲିଯାଅ, ଗଢ଼ି ନବ କାଳ
ଏକ ଧରା, ଏକ ନର ଜାତି, ନାହିଁ ଧନୀ, ନାହିଁ ନା କାଙ୍ଗାଳ ।
ଉଜ୍ଜୀବିତ, ଉତ୍ପୀଡ଼ିତଗଣ କି ବିରାଟ ସୃଷ୍ଟି କରିପାରେ
ଭାବି ଥରେ, ଅତୀତରୁ ଆଣି ଦୃଷ୍ଟି ଦିଅ ମୂଳ ସମସ୍ୟାରେ ।

ସେ ସମାଜେ ନାହିଁଟି ବୁଭୁକ୍ଷା,
ନାହିଁ ଯହିଁ ଧନ-ବର୍ବରତା,
ସେ ସମାଜ ତୋଳିବାରେ ଲାଗି
ଅସ୍ପୃଶ୍ୟ ସେ ନୁହେ ଜଣକର,
ଜନମାତ୍ର ଶଙ୍କାହୀନ ଯହିଁ
ମାନବତ୍ୱ ଅବାଧେ ଫୁଟଇ ।
କୋଣାର୍କ ସେ ନବ, ଅନଶ୍ୱର
ଶୁଭ୍ର, ଗର୍ବ ଆମ ସକଳର ।

## ପ୍ରଶ୍ନ

୧ । ପଦ୍ୟଟିର ସାରକଥା ନିଜ ଭାଷାରେ କହ ।

୨ । ପଦ୍ୟାଂଶ ଗୁଡ଼ିକର ଭାବାର୍ଥ ଦଅ ।

(କ) ବର୍ଷେ ଆଜ ଦୁର୍ଦ୍ଦିନର······ମାତ୍ର ପ୍ରବଞ୍ଚନା ।

(ଖ) ଆଜ ତେଣୁ ବର୍ଣ୍ଣାଶ୍ରମ······ବୃଥା ଉଦ୍ଧାରିବା ।

(ଗ) କରିବ କ କୋଟି ଗତ······କାଳି ଅଜକାର ଦୁଃଖରୁ ଉତ୍ତୀର୍ଣ୍ଣ ?

(ଘ) ଯେ ସମାଜେ ନାହିଁଟି ବୁଭୁକ୍ଷା······ଗର୍ବ ଆମ ସକଳର ।

୩ । ଜୀର୍ଣ୍ଣୀକୃତ; ଦୁର୍ଦ୍ଦିନ, ବୁଭୁକ୍ଷା, ଦୁଃସ୍ଥ—ଏଗୁଡ଼ିକର ପ୍ରକୃତି-ପ୍ରତ୍ୟୟଗତ ଅର୍ଥ ଫୁଟାଅ ।

୪ । ଉନ୍ନତ ଉଦାର ସ୍ୱାଧୀନ ଦେଶବାସୀର କ ଅଭିଳାଷ ହେବା ଉଚିତ । ଏ ବିଷୟରେ ଗୋଟିଏ କ୍ଷୁଦ୍ର ପ୍ରବନ୍ଧ ଲେଖ ।

---

ମୁଦ୍ରାକର—ଶ୍ରୀ ରାମଚନ୍ଦ୍ର ଦାସ, ନବଭାରତ ପ୍ରେସ, କଟକ ;